# FOLK TALES OF ORISSA

# କଥାଲହରୀ

ବା

## ଉତ୍କଳ କାହାଣୀ ସଂଗ୍ରହ ।

ଶ୍ରୀ ସଚ୍ଚିଦାନନ୍ଦ ଦାସ ବି, ଏ, ଙ୍କ ଦ୍ୱାରା

ପ୍ରକାଶିତ ।

[illegible] ସଂସ୍କରଣ

ପ୍ରାପ୍ତିସ୍ଥାନ :—

ଶ୍ରୀରାଧାରମଣ-ପୁସ୍ତକାଳୟ

ବାଲୁବଜାର, କଟକ ।

ଫୋ: [illegible] ।

ମୂଲ୍ୟ ଟ° [illegible] ମାତ୍ର ।

# FOLK TALES OF ORISSA.

# କଥାଲହରୀ

ବା

## ଉତ୍କଳକାହାଣୀ ସଂଗ୍ରହ ।

---

ଶ୍ରୀ ରାଘବାନନ୍ଦ ଦାସ ବି, ଏ, ଙ୍କ ଦ୍ୱାରା ପ୍ରକାଶିତ ।

ଷଷ୍ଠ ସଂସ୍କରଣ ।

Printed by H. M. Dutta.
at the Dutta Press,
Cuttack.
1927

ମୂଲ୍ୟ ଟ ୧ ୬/ ମାତ୍ର ।

# ଉତ୍ସର୍ଗ ପତ୍ର ।

ଏହି କ୍ଷୁଦ୍ର ପୁସ୍ତକଖଣ୍ଡି କୌତୂହଳପ୍ରିୟ

ସୁକୁମାରମତି ଉତ୍କଳୀୟ

ବାଳକ ବାଳିକା-

ମାନଙ୍କ ନାମରେ

ପ୍ରକାଶକଙ୍କ ଦ୍ୱାରା

ଉତ୍ସର୍ଗୀକୃତ

ହେଲା ।

# ଭୂମିକା ।



ଏତେଦିନରେ ଅବହମାନକାଳ ଉତ୍କଳର ପୁରସ୍ତ୍ରୀମାନଙ୍କର ମୁଖେ ମୁଖେ ଭ୍ରାମ୍ୟମାଣ, ବାଳକବାଳିକା ସମ୍ପ୍ରଦାୟର ଚିତ୍ତଚିତ୍ତ-ରଞ୍ଜନ, ଶରକୌତୁକମୟ, ଅଦ୍ଭୁତ ମଧୁର କରୁଣ ହାସ୍ୟାଦି ରସ-ବିକାଶରେ ନିତ୍ୟ ସରସ, ଓଡ଼ିଆମାନଙ୍କର କାହାଣୀ ସାହିତ୍ୟକୁ ଲିପିଶିଳ୍ପର ଅଙ୍ଗୀଭୂତ କରି ପ୍ରକାଶ କରିବାର ଉପକ୍ରମ ହେଲା । ଜଣେ କୃତବିଦ୍ୟ ଯୁବକ ଅଳ୍ପଦିନ ହେଲା 'ଉତ୍କଳର କାହାଣୀ' ନାମରେ ଖଣ୍ଡିଏ କ୍ଷୁଦ୍ର ପୁସ୍ତକ ପ୍ରକାଶ କରିଅଛନ୍ତି । ଏବେ ପୁଣି ଜଣେ କରଣ ମହିଳାଙ୍କର ଲିଖିତ 'କଥାଲହରୀ' ବା ଉତ୍କଳ କାହାଣୀ ସଂଗ୍ରହର ପ୍ରଥମଭାଗ ପ୍ରକାଶିତ ହେଲା । ପ୍ରକାଶକ ମହାଶୟ ମୋତେ ଶଂସିତ ମହିଳାଙ୍କର ହସ୍ତଲିଖିତ ଅନେକ ଗୁଡ଼ିଏ କାହାଣୀର ପାଣ୍ଡୁଲେଖ୍ୟ ଦେଖିବାକୁ ଦେଇଥିଲେ । ମୁଁ ଲେଖିକାଙ୍କର ଅକୃତ୍ରିମ ଲିପିମାଧୁର୍ଯ୍ୟ ଉପଲବ୍ଧି କରି ପ୍ରକାଶକ ମହାଶୟଙ୍କର ତାହା ପ୍ରକାଶ କରିବାର ଇଚ୍ଛାକୁ ସମର୍ଥନ କରିଥିଲି । ବର୍ତ୍ତମାନ ସେଥିର ପ୍ରଥମ ଖଣ୍ଡ ମୁଦ୍ରିତ ହେବାର ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଅଛି । ପ୍ରକାଶକ ମହାଶୟ ପୁସ୍ତକକୁ ସର୍ବାଙ୍ଗସୁନ୍ଦର କରିବାପାଇଁ ଯଥାସାଧ୍ୟ ଯତ୍ନ କରିଅଛନ୍ତି ।

ବର୍ତ୍ତମାନ ଓଡ଼ିଆରେ ଯେଉଁ ଗଦ୍ୟ ରଚନା ପ୍ରଣାଳୀ ଦେଖାଯାଏ ତାହା ନିତାନ୍ତ ଆଧୁନିକ ଏବଂ ବୈଦେଶିକ ସାହିତ୍ୟର ପ୍ରଭାବ ଯୋଗୁଁ ବହୁପରିମାଣରେ କୃତ୍ରିମଭାବାପନ୍ନ, କିନ୍ତୁ ଏହି କାହାଣୀମାନଙ୍କରେ ଯେଉଁ ଭାଷାଭଙ୍ଗୀ ବା ବାକ୍ୟରଚନା ପ୍ରଣାଳୀ

ଲକ୍ଷିତ ହେବ, ତାହା ଚିରରକ୍ଷଣଶୀଳା ନାରୀମାନଙ୍କର ମୁଖ-ନିଃସୃତ ଉତ୍କଳ ଭାଷାର ସ୍ୱାଭାବିକ ସ୍ରୋତ। ତାହାର ଅପୂର୍ବ ସୁଲଭ ଅକୃତ୍ରିମ ମୁକ୍ତ ମାଧୁର୍ଯ୍ୟର ମୋହିନୀ ଶକ୍ତି, କେତେକ ପଣ୍ଡିତମ୍ମନ୍ୟ ଉତ୍କଟ ରୁଚିଗ୍ରସ୍ତ ଲୋକଙ୍କ ଛଡ଼ା, ଅଉ କିଏ ଅସ୍ୱୀକାର କରିବ ?

କେବଳ ଶିଶୁମାନଙ୍କ ଚିତ୍ତରଞ୍ଜନାର୍ଥ କାହାଣୀଗୁଡ଼ିକ ପ୍ରକାଶିତ ହୋଇଥିଲେହେଁ, ତାହା ବୟସ୍କମାନଙ୍କର ଅବଜ୍ଞେୟ ବା ଉପେକ୍ଷଣୀୟ ନୁହେଁ। ତତ୍ତ୍ୱାନୁସନ୍ଧାୟୀମାନେ ସେଥିର ଭାଷା ମଧ୍ୟରୁ ଉତ୍କଳ ଭାଷାସମ୍ବନ୍ଧୀୟ ତତ୍ତ୍ୱ, ସେଥିରେ ବର୍ଣ୍ଣିତ ଘଟଣାମାନଙ୍କରୁ ପ୍ରାଚୀନ ରୀତିନୀତି-ବିଶ୍ୱାସ-ବିଷୟକ ତଥ୍ୟ ଏବଂ ଅନ୍ୟ ନାନାବିଧ ସତ୍ୟ ମଧ୍ୟ ଆବିଷ୍କାର କରିପାରନ୍ତି। ଏହି ଗ୍ରାମ୍ୟ ଗଳ୍ପ-ସାହିତ୍ୟସଙ୍ଗରେ ଅପର ଦେଶରେ ଅନ୍ୟ ଭାଷାରେ ପ୍ରଚଳିତ ଗଳ୍ପ-ସାହିତ୍ୟର ତୁଳନା କରି ସୌସାଦୃଶ୍ୟ ଓ ବୈଷାଦୃଶ୍ୟର ହେତୁ ନିର୍ଦ୍ଦେଶ-ପୂର୍ବକ ନାନା ପ୍ରତ୍ନ-ତତ୍ତ୍ୱ ମଧ୍ୟ ଆବିଷ୍କୃତ ହୋଇପାରେ। ଏପରି ଅବସ୍ଥାରେ ଯେଉଁମାନେ ପ୍ରାଚୀନ ଗ୍ରାମ୍ୟ ସାହିତ୍ୟକୁ ଅବିକୃତ ଭାବରେ ସଂରକ୍ଷଣ କରିବାକୁ ଯତ୍ନ କରୁଅଛନ୍ତି ସେମାନେ ସର୍ବତୋଭାବରେ ପ୍ରଶଂସାର୍ହ। ମୋର ସମ୍ପୂର୍ଣ୍ଣ ଆଶା ଯେ ପ୍ରକାଶକ ମହାଶୟଙ୍କର ପ୍ରୟାସ ସର୍ବତୋଭାବେ ସଫଳ ହେବ।

ଶ୍ରୀ ମଧୁସୂଦନ ରାଓ।

# ବିଜ୍ଞାପନ ।

—:o:—

ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡିକରେ ଉତ୍କଳଦେଶୀ ଅସଂଖ୍ୟ ବାଳକ ବାଳିକା ଗଳ୍ପମଧ୍ୟରୁ ଦଶଗୋଟି ପ୍ରକାଶ କରିବାକୁ ପ୍ରୟାସୀ ହେଲୁଁ । ଏହି କାହାଣୀଗୁଡ଼ିକ କଟକୈକା କରଣମହିଳା ଦ୍ୱାରା ବର୍ଣ୍ଣିତ ଓ ଲିଖିତ ଏହିପରି କେତେଗୁଡ଼ିଏ କାହାଣୀ ସଂଗ୍ରହ କରି ପୁସ୍ତକାକାରରେ ପ୍ରକାଶ କରିବାକୁ ଆମ୍ଭେ ବହୁବର୍ଷହେଲା ହୃଦୟରେ ଇଚ୍ଛା ପୋଷଣ କରିଥିଲୁଁ, ମାତ୍ର ସୁବିଧା ଅଭାବରୁ ସେ ବାସନା ଆଜ ପର୍ଯ୍ୟନ୍ତ ପୂର୍ଣ୍ଣ ହୋଇ ପାରି ନ ଥିଲା । ବର୍ଣ୍ଣନାର ଲାଳିତ୍ୟ ଓ ଭାଷାର ମାଧୁର୍ଯ୍ୟରକ୍ଷା ନିମିତ୍ତ କାହାଣୀଗୁଡ଼ିକ ଯଥାସମ୍ଭବ ଲେଖିକାଙ୍କ ନିଜଭାଷାରେ ପ୍ରକାଶିତ ହୋଇଅଛି, କେବଳ ଅର୍ଥଗ୍ରହଣର ସୌକର୍ଯ୍ୟାର୍ଥ ଛେଦଚିହ୍ନନ୍ୟାସ ଓ ଅତ୍ୟଳ୍ପସ୍ଥାନରେ ଭାଷାପରିବର୍ତ୍ତନ ଅମ୍ଭଦ୍ୱାରା ହୋଇଅଛି । ଏହି ସଂଶୋଧନ କାର୍ଯ୍ୟରେ ଆମ୍ଭେ କଟକ ଟ୍ରେନିଂସ୍କୁଲର ହେଡ଼ମାଷ୍ଟର ମାନନୀୟ ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓଙ୍କଠାରୁ ପ୍ରଭୂତ ସାହାଯ୍ୟ ପାଇଅଛୁ । ଏଥିନିମନ୍ତେ ତାଙ୍କଠାରେ ଆମ୍ଭେ ବିଶେଷ ଋଣୀ । ଉକ୍ତ ମହାଶୟ ମଧ୍ୟ କାହାଣୀଗୁଡ଼ିକ ଆଦ୍ୟୋପାନ୍ତ ପାଠ କରି ପୁସ୍ତିକାନ୍ତର୍ଗତ ଭୂମିକାଟି ଲେଖିଦେଇ ଅମ୍ଭଙ୍କୁ ବିଶେଷ ଉତ୍ସାହିତ କରିଅଛନ୍ତି । ଆମ୍ଭେ ଏଥିନିମନ୍ତେ ତାହାଙ୍କଠାରେ ଚିରକୃତଜ୍ଞତା ପାଶରେ ବଦ୍ଧ । ପରିଶେଷରେ ସାଧାରଣଙ୍କୁ ବକ୍ତବ୍ୟ ଏହି ଯେ ଏହି କାହାଣୀ ପୁସ୍ତିକାଖଣ୍ଡି ସେମାନଙ୍କର ଦୃଷ୍ଟିରେ ପଠନଯୋଗ୍ୟ ବିବେଚିତ ହେଲେ, ଅମ୍ଭର ଶ୍ରମ ସଫଳ ହୋଇଅଛି ବୋଲି ଜ୍ଞାନ କରିବୁଁ ।

କଲେଜଗଳି, କଟକ ।<br>୧୦।୧୦।୧୯୦୧ } ପ୍ରକାଶକ ।

# ଷଷ୍ଠ ସଂସ୍କରଣର ବିଜ୍ଞାପନ ।



ପଞ୍ଚମ ସଂସ୍କରଣର କପିଗୁଡ଼ିକ ନିଃଶେଷିତ ହୋଇଯାଇଥିବାରୁ ଷଷ୍ଠ ସଂସ୍କରଣ ପ୍ରକାଶିତ ହେଲା । ଲିପି ଦୋଷଗୁଡ଼ିକ ସଂଶୋଧନ କରାଯାଇଅଛି । ପୁସ୍ତିକାଖଣ୍ଡି ପୂର୍ବବତ୍ ଆଦର ପାଇଲେ ଲେଖକ ପ୍ରକାଶକ ଆନନ୍ଦିତ ହେବେ । ଇତି ।

ତା ୯ ରିଖ ଜୁଲାଇ ୧୯୨୭ ମସିହା ।

ପ୍ରକାଶକ ।



# ସୂଚିପତ୍ର ।



# ଉତ୍କଳ କାହାଣୀ ସଂଗ୍ରହ ।

## ପ୍ରଥମ ଭାଗ ।

### କଥାର ଲଥଃ ।

କଥାଟିଏ କହୁଁ   କଥାଟିଏ କହୁ ।
କସ୍ କଥା ?   ବେଙ୍ଗୁଲି କଥା ।
କସ୍ ବେଙ୍ଗୁଲି ?   କାଠ ବେଙ୍ଗୁଲି ।
କିସ୍ କାଠ ?   ଢେଲି ମାଠ ।
କିସ୍ ଢେଲି ?   ଘଣା ପେଲି ।
କିସ୍ ଘଣା ?   ଥଣ୍ଟ ଘଣା ।
କିସ୍ ଥଣ୍ଟ ?   କମ୍ମାର ଥଣ୍ଟ ।
କିସ୍ କମ୍ମାର ?   ବୁଢୀ ମନ୍ତ୍ରଣୀ ।
କିସ୍ ବୁଢ଼ୀ ?   ଶୂକଲ ବୁଢ଼ୀ ।
କସ୍ ଶୂକଲ ?   ହାତୀ ଶୃଙ୍ଖଳ ।
କିସ୍ ହାତୀ ?   ରାଜାଙ୍କ ହାତୀ ।
କିସ୍ ରଜା ?   ଖଣ୍ଡ ରଜା ।
କିସ୍ ଖଣ୍ଡ ?   ମିରଚ୍ ଲଣ୍ଡ ।
କିସ୍ ମିରଚ୍ ?   ଝାଡ଼ି ମିରଚ୍ ।
କିସ୍ ଝାଡ଼ ?   କିଂଣ୍ଟା ଝାଡ଼ ।
କିସ୍ କଣ୍ଟା ?   କାନକୋଲି କଣ୍ଟା ।
ଯହିଁ ଲାଗିଥାଏ ଝଟାପଟା । *

---

* କଥାଟିଏ କହିବା ପୂର୍ବରୁ ଶ୍ରୋତାମାନଙ୍କ ଅନୁରୋଧର ଉତ୍ତରରେ ବାଳକମାନେ ଏହି ଅର୍ଥହୀନ ବାକ୍ୟ ଗୁଡ଼ିକ କହିଥାନ୍ତି ।



# ସାଧବଘର ବୋହୂ କଥା ।

ଗୋଟିଏ ସାଧବଟିଏ ଯେ ତାର ସାତ ପୁଅ ସାତ ବୋହୂ । ସବା ସାନ ବୋହୂଟିକି କେହି ଦେଖି ପାରନ୍ତି ନାହିଁ । ଏକା ସ୍ୱାମୀଟି ଭଲ ଦେଖିପାରେ । ସମସ୍ତେ ସକାଳୁ ଗାଧୋଇ ପାଧୋଇ ଆସନ୍ତି, ସାନ ବୋହୂଟି ଅବେଳ ପହରେ ଗାଧୋଇ ଯାଏ । ଗାଧୋଇ ଆସେ, ସେଠାରେ ଠାକୁର ଥାଆନ୍ତି ନଈପାଖେ, ସାନବୋହୂ ଢଅଙ୍କଠାରେ ଦଣ୍ଡବତ କରେ, କହେ ଶ୍ୱଶୁର ହୋଇବେ ଗାଁ ରାଜନ ତୁଲେ ଶାଶୂ ହୋଇଥିବେ ରାଣୀ, ଛ ଦେଢ଼ଶୁର ଛ ସାମନ୍ତ ଲୋ ଛ ଯାଆ ସାଆନ୍ତାଣୀ, ମୋ ଗିରସ୍ତ ହେବ କନକରାଜନ ମୁଁ ହେବି ପାଟରାଣୀ । ପୁଅ ହେଇଥିବ ରାଜକୁମର ଲୋ, ପୋଥି ଧରି ଗୀତ ଗାଇବ, ହାରେ ଲଗାଇବ ସୁନାଟଭା ଗଛ ନଗୀ ଧରି ଫୁଲ ତୋଳିବ । ହଅ ହୋଇବ ? ହଁ କହନ୍ତି ହଁ ହୋଇବ । ଏପରି ସବୁଦିନେ କହେ, ହଁ କହନ୍ତି ହଁ ହୋଇବ । ଦିନକର ଛ ଯା ଯାକ ଶୁଣିଲେ, ଯାଇକରି ମିଛରେ ଶାଶୂ ଆଗରେ କହିଲେ, ସାନ୍ତାଣି ଶୁଣିଲଣି ତମ ସାନବୋହୂ କଣ କହୁଚି ! ଶାଶୂ କହିଲା କଣ କହୁଚି ? କହୁଚି, ଛ ଦେଢ଼ଶୁର ଛ ମୂଲିଆ ଲୋ ଛ ଯାଆ ମୂଲିଆଣି ଶ୍ୱଶୁର ହୋଇବେ ଗାଁର ମଳକ, ଶାଶୂ ହେବେ ମଳକାଣୀ, ମୋ ଗିରସ୍ତ ହେବ କନକରାଜନ ମୁଁ ହେବି ପାଟରାଣୀ, ପୁଅ ହେଇଥିବ ରାଜକୁମର ଲୋ ପୋଥି ଧରି ଗୀତ ଗାଇବ, ହାରେ ଲଗାଇବ ସୁନା ଟଭାଗଛ ନଗୀ ଧରି ଫୁଲ ତୋଳିବ । ସେ ପଛରେ ହଁ ହୋଇବ ? ସେ ଦିଅଁଟା କହେ ହଁ ହୋଇବ । ଶାଶୂ ଶ୍ୱଶୁର

ସମସ୍ତେ କହୁଲେ ସାନ ବୋହୂକୁ ଘରୁ ତଡ଼ିଦିଅ । ତା ସ୍ୱାମୀ ଆଗରେ କହୁଲେ । ସ୍ୱାମୀ କହୁଲା ହଁ ତଡ଼ିଦେବ ଯେ, ରହୁଥାଅ ବୁଝିବା, ଶୁଣିବା ଲୁଚକରି ସେ କଣ କହୁବ, ତେବେ ଯାଇଁ ତଡ଼ିଦେବ, ବୃଥାରେ କାହିଁକି ଯେମନ୍ତ ହେଉଚ ? ସମସ୍ତେ ତୁନତାନ ହୋଇ ରହୁଲେ । ତହିଁ ଆରଦିନ ସାନବୋହୂ ଗାଧୋଇ ଗଲାବେଳେ ଶାଶୂ, ଛ ଯା, ସ୍ୱା ବର ଲୁଚକରି ରହୁଲେ । ଏ ଗାଧୋଇ ଆସି ଠାକୁରଙ୍କଠାରେ ଦଣ୍ଡବତ କଲା ବେଳେ କହୁଲା, ଶଶୁର ହୋଇବେ ଗାଁ ରାଜନ ଲୋ, ଏହୁପରି ସବୁଦିନେ ଯେମନ୍ତ କହେ ସେମନ୍ତ କହୁଲା । ଦିଅଁ କହୁଲେ ହଁ ହୋଇବ । ସାନବୋହୂ ଘରକୁ ଆସିଲା, ଏ ସବୁ ଘରକୁ ଆସିଲେ ଏହାର ବର କହୁଲା, ସେତ ଏହା କହୁଲା, ତେମେ ସବୁ କେମନ୍ତେ ଅନ୍ୟ ପ୍ରକାର କହୁଲ ? ଆଜ ଏହା କହୁଲ, ଆଉ କେଉଦିନ ଆଉ କଣ କହୁବ । ଦିଅ ତାକୁ ବାହାର କରିଦିଅ, ମତେ ବାହାର କରିଦିଅ, ଆମେ ଯାଉଛୁଁ । ଏହା କହୁ ସ୍ୱାମୀ ସ୍ତ୍ରୀ ଦୁହେଁଯାକ ଗଲେ ଘରୁ ବାହାରି । ଯାଇଁ ଆଉ ଗୋଟିଏ ରାଇଜରେ ଗୋଟାଏ ବରଗଛ ମୂଳରେ ବସିଚନ୍ତି, ସେ ରାଇଜର ରଜା ମରି ଯାଇଥାଏ ଯେ ହାତୀ ମୁଣ୍ଡରେ କଲଶ ଦିଆ ହୋଇଥାଏ, ଯାହା ଉପରେ ହାତୀ କଲଶ ଢାଳିବ ସେ ରଜା ହେବ । ହାତୀ କଲଶ ଘେନ ବୁଲୁଥାଏ, ଦେଖିଲା ଏ ଦୁହେଁ ବରଗଛମୂଳେ ବସିଚନ୍ତି, ସ୍ୱାମୀଙ୍କ ଉପରେ କଲଶ ଢାଳିଦେଲା, ସ୍ୱାମୀଙ୍କୁ ଉପରେ ବସାଇଲା, ନେଇ ସେ ରାଇଜରେ ରଜା କରାଇଲା । ଏ ରଜା ହେଲା, ଭାରିଯା ପାଟରାଣୀ ହେଲା, ରହୁଲେ । ପୁଅ ଜନ୍ମ ହେଲା, ପୁଅର ନା ଦେଲେ, ଖଡ଼କୁଅଁ, କାନବଳା ହେଲା । ପୁଅ ବଢ଼ିଲା, ଦୁଆରେ ଗୋଟାଏ ଝୋଲାଗଛ ଲଗାଇ ଥାଏ, ପୁଅ ହାତରେ ଖଣ୍ଡିଏ ଅଙ୍କୁଡ଼ୀ ଦେଇଥାଏ, ପୁଅ ଫୁଲ ତୋଳୁଥାଏ, ଗୀତ ବୋଲୁଥାଏ

ପୋଖରୀ ଖୋଳା ଲାଗିଥାଏ, ଏହାପରେ ଭଗ୍ନ କାରଖାନା ଲାଗିଛି ତାର। ଏ ସାଧବଘର ବସ୍ତକରେ ମାଡି ଝାଉଗଲାପରେ ଚଳେ ପେଟକୁ ଦାନା ଅଣ୍ଟିଲା ନାହିଁ, ଚାଣ୍ଡିକି କନା ମିଳିଲା ନାହିଁ । ଶୁଣି ପାଇଲେ କୋଉ ଦେଶରୁ ଜଣେ ନୂଆ ରଜା ଆସିଛି ଯେ ପୋଖରୀ ଖୋଳାଉଛି, କୂଅ ଖୋଳାଉଛି, ସବୁ ଦାନ ଧର୍ମ କରୁଛି । ଏମାନେ କହିଲେ ଆମର ଚାଲ ମାଟି ବୋହିବା ଯେ ମୂଲ ଆଣି ପେଟ ପୋଷିବା । ଛଅ ବୋହୂଯାକ, ଶାଶୁ ଶଶୁର; ଛ ପୁଅ, ସମସ୍ତେ ଗଲେ, ଯାଇ ପୋଖରୀ ଉପରେ ବସିଲେ । ଯେ କଡ଼ାକଥ (୧) ପକାଉଥିଲା ତାକୁ କହିଲେ ଯା ତମ ସାଆନ୍ତାଣୀଙ୍କି କହିବ ସାତଜଣ ମରଦ ସାତଜଣ ମାଇପେ ଆସିଛନ୍ତି ତାଙ୍କୁ ମାଟି ବୁହାଇବେ ? ଜଣେ ଚାକରଥ ଯାଇ ରଜାଙ୍କୁ କହିଲା, ରଜା କହିଲେ ଯା ରାଣୀଙ୍କ ପଚାରବୁ । ରାଣୀକି ଆସି ସେଇଯା କହିଲା, ରାଣୀ କହିଲେ ହଉ ସେ ମାଟି ବୋହନ୍ତୁ । ଏ ଜାଣିପାରିଲା, ଉପର ମହଲାକୁ ଚଢ଼ିଗଲା, ଦେଖିକରି ଆସିଲା; କହି ପଠାଇଲା ଯୋଉ ବୁଢ଼ା ବୁଢ଼ୀ ଦୋଟି, ତାଙ୍କୁ ଅଳପ ମାଟି ଦେବ, ଯୋଉ ଛଅଟା ମରଦ, ଛଅଟା ମାଇପେ, ତାଙ୍କ ମୁଣ୍ଡରେ ଖୁବ ମଜଭୁତ୍ ବୋଝେ ଲେଖାଁ ଲଦିଦେବ । ଏମାନେ ମାଟି ବୋହିଲେ; ଖୁବ ବୋଝେ ଲେଖାଁ ମାଟି ନଥନ୍ତି, କଉଡ଼ି କଡ଼ାଏ ପାନ୍ତି । ଏ କଣକଲା ଏଣେ ପହାରା ପାଖରୁ କହି ପଠାଇଲା, ଆଜ ବେଣୀକରି ମରଖାଇ ବାସ କରିବ, ଭଲ କରି ତରକାରି କରିବ, ସବୁ ଆଣିବ ଆଡ଼େ ଦେଇଯିବ । ପହାରା ରୋଷାଇବାସ କରି ରାଣୀଙ୍କ ଉଆ-

---

୧ । ଦୂରତା ଅନୁସାରେ ବୋଝେ ମାଟି ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ପକାଇଲେ କଡ଼ାଏ ବା ଦୁଇକଡ଼ା ବା ଅଧିକ ଦେବା ନିୟମକୁ କଡ଼ାକଥା କହନ୍ତି ।

ଘରେ ଦେଇ ଆସିଲା । ଏ ଗୃକରଙ୍କୁ କହିଲା ସେ ଯୋଉ ସାତ ଜଣ ମରଦ ସାଙ୍ଗକଣ୍ଠି ମାଇପେ ଆସିଛନ୍ତି ତାଙ୍କୁ ତାଙ୍କ ଅଣ; ଚାକର ତାକି ଅଣିଲା । ଏ କଣକଲା, ସାତଜଣ ଭଣ୍ଡାର, ସାତ ଗିନା ତେଲ, ସାତ ଯୋଡ଼ା ପାଟଯୋଡ଼ ଯ୍ୟାକୁ ସବୁ ସାତ ମରଦଙ୍କପାଇଁ ପଠାଇଲା; ସାତ ମାଇପିଙ୍କ ପାଇଁ ସାତ କାଟୁଆ ହଳଦ, ସାତ ଗିନା ତେଲ, ସାତୁଟା ଫୋଇଲା, ସାତଖଣ୍ଡ ପାଟଶାଢ଼ୀ ପଠାଇଦେଲା । ସେ ସବୁ ଲଗେଇ ପଗେଇ ହୋଇ ଖାଯୋଇ ପାଯୋଇ ଆସିଲେ, ଆଉ ଏ ସାନବୋହୂ ସାନ ପୁଅ ବୋଲି ଜାଣନ୍ତି ନାହିଁ, ମନେ ମନେ ହେଉ-ଥାନ୍ତି ସମସ୍ତେ ଏ ଆମକୁ ଏପରି ସବୁ ଖାତିର କରୁଛି, ଏ କଣ ଆମକୁ ଆଉ ମାରି ପାଇବ କି ? ଏପରି ମନରେ ପାଞ୍ଚି ହେଉଥାନ୍ତି । ଯୋଉଠୁଁ ଏମାନେ ଗାଧୋଇ ଆସିଲେ ଦେଖିଲା, ଦିଇଟା ଘରେ ଠା ପିଢ଼ା କଲା, ଶଶୁର ଆଉ ଛ ଦେଢଶୁରଙ୍କୁ ଗୋଟାଏ ଘରେ ଦେଲା, ଶାଶୁ ଆଉ ଛ ଯାଙ୍କୁ ଆଉ ଗୋଟାଏ ଘରେ ଦେଲା । ସମସ୍ତଙ୍କୁ ଲୁଣ ଦେଉଥାଏ, ଆଉ ଶାଶୁ ଶଶୁରଙ୍କୁ ଲୁଣ ଦେଉ ନଥାଏ ଯେତେଥର ଅସୁଥାଏ ପରଷିବାକୁ, ତେତେଥର ଡାଲି ଭଲରେ ଖଣ୍ଡେ ଲେଖାଁ ପାଞ୍ଚ ପିଠା ଅସୁଥାଏ । ଏମାନେ ମନେ କରୁଥାନ୍ତି ଏହା ଘରେ ଏମନ୍ତ କେତେ ବୋହୂ ଅଛନ୍ତି କି ? ଏ ସମସ୍ତଙ୍କୁ ଆଗରେ ପଛରେ ଦେଇ ସାରିଲା, ଫେର କହିଲା ଆଉ କଣ ଦେବି ? ଶାଶୁ ଶଶୁର ଆଉ ଏତେକଥା ଜାଣିଚନ୍ତି ? କହିଲେ ଲୁଣ ଦୋଷ ଦେଲ । ଏ ସେତିକିବେଳେ କହିଲା, କେତେ ଦେବି ଲୁଣ, କି କହିବି ଏହି ଶାଶୁ ଶଶୁରଙ୍କ ଗୁଣ । ଏହା ଯୋଉଠୁ କହିଲା, ସମସ୍ତେ ଜାଣି ପାରିଲେ, କାନ୍ଦି ଉଠିଲେ; କହିଲେ ଯାହା କହିଥିଲା ସେଇଆ ହେଲା । ଆମେ ଯାହା କହିଥିଲୁ ଆମକୁବ ସେଇଆ ଫଳିଲା । ଏହିପରି କୁହା କୁହି ହେଲେ, ସେଠାରେ ମାସେ ଦିମାସେ ରହିଲେ । ତେଣେ ଅଲଗା ଡ଼ଂସ ତୋଳା ହେଲା, ସେମାନେ ସେଥିରେ ରହିଲେ,

ଘରଦୁଆର ହଲେ, ମୁଁ ଗଲାରୁ କଥା କହୁନଲେ ନାହିଁ । * ମୋ କଥାଟି ସରିଲା, ଫୁଲଗଛଟି ମରିଲା ।

'ହଇରେ ଫୁଲଗଛ' କାହିଁକି ମରିଲୁ ? ମତେ ଗାଈ ଖାଇଗଲା ।

ହଇରେ ଗାଈ କାହିଁକି ଖାଇଲୁ ? ମତେ ଗଉଡ଼ ଜଗିଲା ନାହିଁ ।

ହଇରେ ଗଉଡ଼ କାହିଁକି ଜଗିଲୁ ନାହିଁ ? ମତେ ବଡ଼ବୋହୂ ଭାତ ଦେଲାନାହିଁ ।

ହଇରେ ବଡ଼ବୋହୂ କାହିଁକି ଭାତ ଦେଲୁ ନାହିଁ ? ମତେ ପୁଅ ଛାଡ଼ିଲା ନାହିଁ ।

ହଇରେ ପୁଅ କାହିଁକି ଛାଡ଼ିଲୁ ନାହିଁ ? ମତେ ଧୂଳିଆ ଯନ୍ଦା କାମୁଡ଼ିଲା ।

ହଇରେ ଧୂଳିଆଯନ୍ଦା କାହିଁକି କାମୁଡ଼ିଲୁ ? ମୁଁ ତଳେ ଥାଏ କଅଁଳ 'ମାଉଁସ ପାଇଲେ କୁଟ୍ କରି ଖାଏ' ।





## ଶ୍ୱେତ ବସନ୍ତ କଥା ।

ଗୋଟିଏ ମାଳଟିଏ, ସେ ଭାରି ଦୁଃଖୀଟିଏ । ଏ ମାଳର ଦୁଇ ପୁଅ, ବଡ଼ପୁଅ ନା ଶ୍ୱେତ, ସାନ ପୁଅ ନା ବସନ୍ତ । ଦୁଇ ଭାଇ ଏହିପରି

---

* ପ୍ରତ୍ୟେକ କାହାଣୀର ଉପସଂହାରରେ କଥକମାନେ ଏହି କଥାଗୁଡ଼ିକ କହିଥାନ୍ତି କେହି ବା କେବଳ ନିମ୍ନଲିଖିତ କେତୋଟି ଶବ୍ଦ ଉଚ୍ଚାରଣ କରି କଳ୍ପିତ ଉପସଂହାର କରନ୍ତି ।—

"ମୋ କଥାଟି ଏତିକି ଫୁଲ ଫୁଟିଗଲା କଥା କେତକୀ ।"

ଦୁଃଖ ପାଇ ରହୁଥାନ୍ତି, ମାଲ ତା ଭରସା ଦୁହେଁଯାକ ମରଗଲେ ଆଉତ କେହି ଅଶ୍ରା ନାହିଁ, ଏ ଦୁହେଁ ଦାଦିଘରେ କାମ ଦାମ କର ଚଳୁଥାନ୍ତି । ଦିନେ ଦାଦିର ସୁନା ମୁଦି ଚୋରଗଲା, ଦାଦି ଏ ଦୁହିଁଙ୍କି ଧରଲା । ଏ ଦୁହେଁ କହିଲେ ଆମ୍ଭେ ନେଇ ନାହୁଁ । ଦାଦି ଏମାନଙ୍କ କଥା ସତ ନ କର ଏ ଦୁହିଁକି ତଡ଼ିଦେଲା । ଏ ଦୁହେଁ କାନ୍ଦି ବୋବେଇ ଘରୁ ବାହାର ଗଲେ, ଯାଇଁ ଗୋଟାଏ ବନସ୍ତରେ ପହଞ୍ଚିଲେ । ସେ ବନସ୍ତରେ ଗୋଟିଏ ଶୁଆଟିଏ ଗୋଟିଏ ସାରିଟିଏ ଗଛରେ ବସି କଥା ହେଉଚନ୍ତି—ଶୁଆ କହୁଚି ମତେ ଯେ ଧରବ ସେ ରଜା ହେବ, ସାରୀ କହୁଚି ମତେ ଯେ ଧରବ ସେ ଚାଲିଲେ ପଦ୍ମ ଫୁଟିବ, କାନ୍ଦିଲେ ମୁକ୍ତା ଝଡ଼ିବ । ଏହିପରି କୁହାକୁହି ହେଉଥାନ୍ତି; ଏ ଦୁଇ ଭାଇ ଶୁଣିଲେ ଧରିବାକୁ ଗଲେ । ଶ୍ୱେତ ଧରିଲା ଶୁଆଟିକି, ବସନ୍ତ ଧରିଲା ସାରୀକି ? ଧର କର ଆଣି ଭୋକ ବଳରେ ଦୁହେଁ ଦୋଟିଯାକ ଖାଇ ଦେଲେ । ଖାଇ ସାର ବସନ୍ତ କହିଲା ମୋତେ ଶୋଷ କରୁଛି; ପାଣି କେଉଁଠି ମିଳିବ ? ଶ୍ୱେତ କହିଲା, ତୁ ଏଇଠି ବସଥା ମୁଁ ପାଣି ଅଣେ; ଏତା କହି ପାଣି ଖୋଜିବାକୁ ଗଲା । ସେ ଯାଉଥାଉଁଲେ ହୋଇଚି, ସେ ଦେଶର ରଜା ମର ଯାଇଛି ଯେ ହାତୀ କଳସ ଧରି ବୁଲୁଚ, ଯାହାକୁ ମନ କରବ ତା ଉପରେ କଳଶ ଢାଳ ଦେବ; ଶ୍ୱେତକୁ ଦେଖି ତା ଉପରେ କଳଶ ଢାଳ ଦେଲା । ପାତ୍ର ମନ୍ତ୍ରୀ ସମସ୍ତେ ଶ୍ୱେତକୁ ହାତୀରେ ବସାଇ ନେଇ ଗଲେ; ରାଜା କଲେ । ଶ୍ୱେତ ରଜା ହୋଇ ସବୁ ବୁଝିଲା, ମାତ୍ର ବସନ୍ତ ପାଇଁ ଭାବ ହେଉଁଥାଏ ମନେ୨ । ଏଣେ ବସନ୍ତ ଭାଇର ଅନାଇଁ ୨ ଅଜ ଭାଇ ଅସିଲା ନାହିଁ ଯୋଉଁ; କାନ୍ଦ ୨ ବନସ୍ତଭିତରକୁ ବାହାରିଲା । ବାଟରେ କାନ୍ଦିଲାଖଣି ମୁକ୍ତା ଝଡ଼ୁଥାଏ; ପାଦ ପକାଇଲାରୁ ପଦ୍ମ ଫୁଟୁଥାଏ ଏହିପରି ବାଟଯାକ ହୋଇ ଯାଉଥାଏ । ବସନ୍ତ ମୁକ୍ତାତକ ଗୋଟାଇ ରଖୁଥାଏ, ବାଟ ଗୁଲୁଥାଏ । ଭାଇର ତ ପାଇଲା ନାହିଁ

ବୁଲି ୨ ସେ ଯୋଉ ଗାଁରେ ରଜା ହୋଇଛନ୍ତି ସେହି ଗାଁରେ ଗୋଟିଏ କୁମ୍ଭାର ଘରେ ରହିଲା । ଲୁଗାପଟା ତ ନ ଥାଏ, ଖଣ୍ଡିଏ ଚିରାଲୁଗାରେ ସେ ମୁକ୍ତାଗୁଡ଼ିକ ବାନ୍ଧି କୁମ୍ଭାର ଘରେ ଗଣ୍ଡିଏ ୨ ଖାଇ ହାମଦାମ କରୁଥାଏ । ଏହିପରି କେତେଦିନ ଗଲା, ରାଜା ଚୋର ଜଗିବାକୁ ମଣିଷ ଦରକାର ହେଲେ, ଗ୍ରାମରେ ଯେତେ ଘର ସମସ୍ତଙ୍କ ଘରୁ ଜଣେ ୨ ଜଗିବାକୁ ଗଲେ । କୁମ୍ଭାରଘରୁ ବସନ୍ତ ଚୋର ଜଗିବାକୁ ଗଲା । ଏଣେ ବସନ୍ତ ନ ଥିଲାବେଳେ କୁମ୍ଭାର ତାର ଲୁଗାପଟା ଫିଟାଇ ଦେଖେ ଯେ, ମୁକ୍ତା ସବୁ ଜକ ଜକ ହେଉଛି । ମୁକ୍ତାଗୁଡ଼ିକ ସେଥିରୁ ନେଇଗଲା, ଢାଳଗୁଡ଼ିଏ ବାନ୍ଧି ଦେଲା । ବସନ୍ତ ଆସି ଦେଖେ ଯେ ମୁକ୍ତାଗୁଡ଼ିକ ନାହିଁ । କୁମ୍ଭାରକୁ ପଚାରିଲାରୁ କୁମ୍ଭାର ନାହିଁକରି ମାରି ଗୋଡ଼ାଇଲା । ବସନ୍ତ ଆଉ କଣ କରିବ, ତୁନି ହୋଇ ରହିଲା । ନିତି ରାତିକି ବସନ୍ତ ଚୋର ଜଗିବାକୁ ଯାଏ, ସେଠିରେ ସମସ୍ତେ ସମସ୍ତଙ୍କ ଦୁଃଖ ସୁଖ କଥାବାର୍ତ୍ତା ହୁଅନ୍ତି । ଏଣେ କଥା ପଡ଼ୁଁ ବସନ୍ତର କଥା ସମସ୍ତେ ପଚାରିଲେ । ବସନ୍ତ କହିଲା ଦୁଃଖ କହିବ କି ସୁଖ କହିବ; ଯାହା ଅଙ୍ଗେ ନିଭାଇଛି ତାହା କହିବ । ତା ଜୀବନର ସବୁ ଘଟଣା କହିଗଲା । ଯେମନ୍ତ ସେ ଦୁଇଭାଇ ଥିଲେ ବାପ ମା କେମନ୍ତ ମରିଯିବାରୁ ଦାଦି ଘରେ ଥିଲେ, ଦାଦିର ମୁଦି ଚୋରିଯିବାରୁ ଦାଦି ଯେମନ୍ତ ତଡ଼ି ଦେଲା, ବନସ୍ତରେ ଶୁଆ ସାରି ଯାହା ୨ କହିଥିଲେ; ଶ୍ଵେତ ପାଣି ପାଇଁ ଯାଇ ଯେମନ୍ତ କୁଅଁରେ ରହିଲା, ଏ କୁମ୍ଭାରଘରେ ରହିଥିଲା; ଏହାର ମୁକ୍ତାଗୁଡ଼ିକ ଯେମନ୍ତ କୁମ୍ଭାର ନେଇଗଲା; ସବୁ କଥା ସେମାନଙ୍କୁ କହିଗଲା । ଏମାନେ ଶୁଣି ବଡ଼ ବ୍ୟସ୍ତ ହେଲେ, ଯାଇ ରାଜାଙ୍କୁ ସବୁ କଥା କହିଲେ । ରାଜା ବସନ୍ତକୁ କୁମ୍ଭାର ଘରୁ ଡକାଇ ଅଣାଇଲେ, ତାକୁ ତାର ପରିଚୟ ପଚାରିଲେ । ବସନ୍ତ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ସବୁ କହିଗଲା । ଶ୍ଵେତ ବସନ୍ତ ଦିହେଁ ଯାକ ଚିହ୍ନାଚିହ୍ନି

ହେଲେ, କେତେ କାନ୍ଦିଲେ । ଶେଷ ବସନ୍ତକୁ ଖବର କରାଇ ଆଣିଲା । ପଞ୍ଚତୀର୍ଥ ପାଣିରେ ଗାଧୋଇଦେଇ ଭଲ ଲୁଗାପଟା ପିନ୍ଧାଇଲା ପାତ୍ର ମନ୍ତ୍ରିଙ୍କି ଡକାଇ ତାକୁ ଯୁବରାଜ କରିବାର ହୁକୁମ ହେଲା । ମନ୍ତ୍ରୀ ହେଉବା ଛତ୍ର ଚାମର ଧରିଲେ, ସିଂହାସନ ଉପରେ ବସନ୍ତ ବସିଲା, ହାତୀ ସୁବର୍ଣ୍ଣ କଳସ ଢାଳି ତାକୁ ଅଭିଷେକ କଲା । ବସନ୍ତ ଯୁବରାଜ ହେଲା; ଶେଷ ବସନ୍ତ ଦୁହେଁ ଯାକ ପରଜାଙ୍କୁ ବଡ଼ ସୁଖରେ ପାଳିଲେ । ବାହାଚୋରି ହୋଇ ସୁଖରେ ରହିଲେ । ମୁଁ ଗଲାକୁ କଥା ନ କହିଲେ । ମୋ କଥାଟି ସରିଲା, ଇତ୍ୟାଦି ।





## ଚମ୍ପୀଚୋରୀ ଦାସୀର କଥା ।

ଗୋଟିଏ ରଜାଟିଏ, ତାର ଗୋଟିଏ ଚମ୍ପାଦେଈ ନାମରେ ଝିଅ, ଝିଅଟି ବଡ଼ ହେବାରୁ ତା ପାଇଁ ବରଘର ଲାଗିଲା । ବରର ନାମ ସୋଳଶିଂଘା ମହାରାଜା । ରଜା ଝିଅଟି; ସେ କଣ ଜାଣନ୍ତି । ଝିଅ ମନେ ମନେ କଲା ସେ ବରର ସୋଳଟା ଶିଙ୍ଘ । ମନେ ମନେ ବଡ଼ ଭାବନାରେ ଥାଏ, ବାହାଘର ଦିନ ବର ଆସି ଅଧବାଟରେ ହେଲାଣି, ଚମ୍ପାଦେଈ ମନ ବଡ଼ ଛଟପଟ ହେଲା । ତାର ଗୋଟିଏ ସମ-ବୟସ୍କ ଦାସୀ ଥିଲା, ତାର ନାମ ଚମ୍ପୀଚୋରୀ, ତାକୁ କହିଲା ଯା ତୁ ବରକୁ ଦେଖି ଆସିବୁ ତା ଶିଙ୍ଘ କିପରି ? ଚମ୍ପୀଚୋରୀ ବରକୁ ଦେଖି ଥିଲା; ନିକଟରେ ଆସି କହିଲା ଶିଙ୍ଘ ଗୁଡ଼ାକ କି ଅବ-ଲିଯୁଆ ହେଉଛି, ସେଉ ଶିଙ୍ଘରେ ଜନାଧଣ୍ଡ ଗୁଞ୍ଜିଆ

ହୋଉଚି; କେଉଁ ଶିଙ୍ଘରେ ଅଡୁଆବାଲ ଗୁଣ୍ଡିଆ ହୋଉଚି କେଉଁ ଶିଙ୍ଘ ନଡ଼ ନଡ଼ ହେଉଛନ୍ତି; ଏହିପରି କହି ଚମ୍ପାଦେଈ ମନରେ ଅଗଠଉଁ ବେଶି ଦୟା ଜାତ କରାଇଦେଲା । ଚମ୍ପା ଦେଈ ଚମ୍ପୀତୋଷୀକୁ କହିଲା ମୁଁ ତାକୁ ବଭା ହେବ ନାହିଁ, ତୁ ତାକୁ ବଭା ହୋ; ମୁଁ ପଛକେ ତୋର ଦାସୀ ହୋଇ ଯିବି । ଚମ୍ପୀତୋଷୀ ଚମ୍ପାଦେଈ ସଜପାଟ ଲଗାଇ କନ୍ୟା ସାଜିଲା ଓ ଚମ୍ପାଦେଈ ଚମ୍ପୀତୋଷୀର ସଜପାଟ ଲଗାଇ ଦାସୀବେଶ ହେଲା, ବଭାଘର ହେଲା । ଚମ୍ପୀତୋଷୀ ଷୋଳଶିଙ୍ଘା ମହାରାଜାକୁ ବଭା ହେଲା, ଚମ୍ପାଦେଈ ତା ସଙ୍ଗରେ ଦାସୀହୋଇ ଗଲା । ଚମ୍ପା-ଦେଈ ଯେତେବେଳେ ଜାଣିପାରିଲା ଯେ ଚମ୍ପୀତୋଷୀ ତାକୁ ମିଛକହି ଅତିସୁନ୍ଦର ଷୋଳଶିଙ୍ଘା ରଜାକୁ ବଭାହେଲା ତାର ମନରେ ଅତି-ଶୟ କଷ୍ଟ ହେଲା । ନିଜେ ତ ଏ କଥା କରିଚି, ଆଉ କଣ କରିବ । ତୁନି ହୋଇ ରହିଲା । ଷୋଳଶିଙ୍ଘା ରଜାର ଆଉ କେହି ନାହାନ୍ତି; ଚମ୍ପୀତୋଷୀ ରନ୍ଧାବଢ଼ା କରେ ରଜାକୁ ଖାଇବାକୁ ଦିଏ; ନିଜେ ଖାଏ ଆଉ ଚମ୍ପାଦେଈକି ଖାଇବାକୁ ଦିଏ । ଚମ୍ପାଦେଈ ଦାସୀ ହାତ ରନ୍ଧା ଖାଏ ନାହିଁ, ନଈକୂଳକୁ ନେଇ ଫୋପାଡ଼ି ଦିଏ, କହେ ଛୁଛୁ କାଉ, ଚମ୍ପୀତୋଷୀ ହାତରେ କି ଚମ୍ପାଦେଈ ଖାଉ । କେହି ନଖାଉ, ସେତ ବନ୍ଧ ହୋଇଥାଉ । ଏହିପରି ସବୁଦିନେ କରେ । ସେ ନଈକୂଳେ ଗୋଟିଏ ଧୋବା ଲୁଗା କାଚୁଥାଏ, ସେ ରାଜାଙ୍କ ଧୋବା, ଏହା ସେ ପ୍ରତିଦିନ ଦେଖେ । ଦିନେ ଯାଇ ରଜାଙ୍କୁ କହିଲା, ମଣିମା ! ଗୋଟିଏ କଥା କହିବାକୁ ଭାରି ଭୟ ମାଡୁଚି, ରଜା କହିଲେ କିଛି ଭୟନାହିଁ କହ । ଧୋବା କହିଲା ମଣିମାଙ୍କ ଉଆସରୁ କିଏ ଗୋଟିଏ ନିତିନଈ-କୂଳକୁ ଯାଏ, ଭାତ ନଈକୂଳେ କୁଢ଼ାଇ ଦିଏ, କହେ ଛୁ ୨ କାଉ, ଚମ୍ପୀତୋଷୀ ହାତରେ କି ଚମ୍ପାଦେଈ ଖାଉ ? କେହି ନ ଖାଉ ସେତ ବନ୍ଧ ହୋଇ ଥାଉ । ରଜା ନିଜେ ଏକଥା ଦେଖିବାକୁ ଦିନେ ଲୁଚି

ରହିଲେ, ଦେଖିଲେ ଦାସୀ ଭାତଗୁଡ଼ାକ ଲୁଚାଇଦେଇ ଏପରିକହୁଚି ହଠାତ୍ ବାହାରି ପଡି ଦାସୀକୁ ଏ କଥାମାନଙ୍କର କାରଣ ପଚାରିଲେ ଚମ୍ପାଦେଈ ନାହିଁ ନାହିଁ ହେଉଥାଏ, ଶେଷରେ ରଜା ଜଗର କରିବାରୁ ସବୁ କଥା ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ କହିଲେ । ରଜା ଘରକୁ ଗଲେ, ଗୋଟାଏ ଖୋପର ଖୋଲାଇଲେ, ଚମ୍ପୀଦେଈକୁ ଡକାଇ ପଚାରିଲେ ଏଥିରେ କେତେ ଧାନ ସମ୍ଭାଇବ । ଏ ଅଡ଼ୁ ଏତେକଥା ଜାଣିଛି ? ନାଇଁ ପଡ଼ି ଖଣିକୁ ଅନାଇଲା, ରଜା ତାକୁ ଖଣି ଭିତରକୁ ପେଲି ଦେଲେ, ତଳକଣ୍ଟା ଉପରକଣ୍ଟା ପକାଇଦେଲେ, ମାଟି ଘଷିଦେଲେ ଚମ୍ପାଦେଈକି ପାଟରାଣୀ କଲେ, ଘର ଦୁଆର କଲେ, ସୁଖରେ ରହିଲେ, ମୁଁ ଗଲିକୁ କଥା ନ କହିଲେ । ମୋ କଥାଟି ସରିଲା, ଇତ୍ୟାଦି ।

—§—



## କାଠଖମ୍ବ କଥା ।

ଗୋଟିଏ ସାଧବଟିଏ ଯେ ତାହାର ସାତ ଝିଅ । ଦିନେଜହ୍ନପଡ଼ିଛି ସାତ ଭଉଣୀଯାକ ଅଗଣାରେ ଖେଳୁଥାନ୍ତି, ବିଚାର କଲେ ଜହ୍ନ କୋଉଠି ଛାଡ଼ୁଛି ଚାଲି ଯିବା ଦେଖିବା । ସାତ ଭଉଣୀଯାକ ଗଲେ, ଯାଇଁ ଗୋଟିଏ ବୁଢ଼ୀଅସୁରୁଣୀ ଦୁଆରେ ଜହ୍ନ ଛାଡ଼ିବାର ଦେଖିଲେ, ସେଇଠି ରାତି ପାହିଲା । ଦେଖିଲେ ବୁଢ଼ୀଅସୁରୁଣୀ ଧାନ ଉଷାଉଛି ଗୋଟାଏ ଭୋଡ଼ା ଚୁଲିରେ ମୁହାଇ ଦେଇଛି ଆଉ ଗୋଟାଏ ଗୋଡ ଯୁଆଡ଼କୁ ଲମ୍ବାଇ ଦେଇଛି । ବୁଢ଼ୀଅସୁରୁଣୀ ଏମାନଙ୍କୁ ଦେଖିଲାକ୍ଷଣି କହିଲା, ଆସରେ ପିଲାମାନେ କୁଆଡ଼େ ଯାଉଛ, ଏଇଠି ବସ, ଖେଳ, ପିଲାମାନେ କହିଲେ ନାହିଁ ଆମେ ଜହ୍ନ କୋଉଠି ଛାଡ଼ୁଛି ଦେଖିବାକୁ

ଆସିଥିଲୁଁ, ଆମ ଘରକୁ ଆମେ ଫେରି ଯାଉଛୁଁ । ସେମାନଙ୍କୁ ଅଟକାଇବାକୁ ବୁଢ଼ୀଅସୁରୁଣୀ କେତେ ଫୁସୁଲାଇଲା, ଏମାନେ କେହି ରହିଲେ ନାହିଁ, ଚାଲି ଆସିଲେ । କେତେକ୍ଷଣ ପରେ ବୁଢ଼ୀଅସୁରୁଣୀର ପିଲାମାନେ ଚରିବାକୁ ଯାଇଥିଲେ ଆସିଲେ । ବୁଢ଼ୀଅସୁରୁଣୀ କହିଲା କୁଅଡ଼େ ଯାଇଥିଲ, ଏତେବେଳେ କି ଆସିଲ; ଏହି ଦଣ୍ଡକ ମଧ୍ୟରେ ଆସିଥିଲେ ଅଇଛଣ୍ଡା କି ସୁନ୍ଦର ଦରବ ଖାଇଥାନ୍ତ; କଇଁସୀକାକୁଡ଼ିପରି ମୁଡ଼ୁ ମୁଡ଼ୁ କରି ଶୋଇଥାନ୍ତ, କି ସୁନ୍ଦର ପିଲାଚୁଣ୍ଡାଏ ଆସିଥିଲେ । ଏବେ ଯାଆନ୍ତି ତାଙ୍କ ଭିତରୁ ଜଣକ କାନରେ ମୁଁ ଷୋଡ଼ଷ ବାନ୍ଧି ଦେଇଛି, ଷୋଡ଼ଷ ବାଜି ବାଜି ଯାଉଥିବ, ଗଛ ଉଠି ଉଠି ଯାଉଥିବ, ପୁଲ ଫୁଟି ଫୁଟି ଯାଉଥିବ ସେହି ବାଟକୁ ଅନାଇ ଅନାଇ ଯିବ; ସେମାନଙ୍କୁ ପାଇବ । ଅସୁରପିଲାମାନେ ଦୌଡ଼ିଲେ, ସାଧବଝିଅଙ୍କ ପାଖରେ ଲାଗିବାକୁ ଅଳପ ବାଟ ଅଛି ଏମାନେ ପଛକୁ ଅନାଇ ଦେଲେ, ଦେଖିଲେ ଅସୁର ଛୁଆ ସାତଟା ତାଙ୍କ ପଛେ ପଛେ ଦୌଡ଼ୁଛନ୍ତି । ଏମାନଙ୍କ ବୁଦ୍ଧି ହଜିଗଲା; କଣ କରିବେ ବୋଲି ଅଣ୍ଟବୁଣ୍ଟ ଦିଶିଲା ନାହିଁ । ବାଟରେ ଗୋଟିଏ ଅମ୍ବଗଛ ଥିଲା ତା ପାଖକୁ ଯାଇଁ ସାଧବଝିଅମାନେ କହିଲେ, ହେ ଅମ୍ବଗଛ ତୁ ଯଦି ସତ୍ୟଯୁଗର ଗଛ ହୋଇଥିବୁ ତୁ ଫାଟି ଯିବୁ ଆମେ ତୋ ଭିତରେ ପଶିଯିବୁ, ତୁ ବୁଜି ହୋଇ ଯିବୁ । ଅସୁରଛୁଆ ସବୁ ଆସି ପହଞ୍ଚିଲା ବେଳକୁ ଏମାନେ ଅମ୍ବଗଛରେ ପଶିଗଲେଣି । ସେ ଗଛମୂଳେ ଗୋଟାଏ ପୋଖରୀ ଥିଲା; ଅସୁରଛୁଆମାନେ ସେ ପୋଖରୀରୁ ପାଣି ଆଣି ଗଛମୂଳେ ଅଜାଡ଼ି ଅଜାଡ଼ି ପୋଖରୀର ପାଣି ଶୁଖାଇ ଦେଲେ । ଗଛକୁ ଦୋହଲାଇ ଦୋହଲାଇ ଉପାଡ଼ି ତଳେ ପକାଇ ଦେଲେ । ଧୋବାଘରୁ କୁରାଢ଼ି ଆଣି ଗଛକୁ ଖଣ୍ଡ ଖଣ୍ଡ କରି କାଟି ପକାଇଲେ, ମଣ୍ଡି ଗଣ୍ଡି ମୁଣ୍ଡାଇ ଘରକୁ ନେଇ ଗଲେ । ନେଇ ବାଢ଼ହୁଅରେ ପକାଇ କୁରାଢ଼ୀରେ ତାକୁ ଚିରିବାକୁ ବସିଲେ ସାଧବଝିଅମାନେ ସେ କାଠ ଗଣ୍ଡି ଭିତରୁ ହୁଳହୁଳି ପକାଇଲେ । ବୁଢ଼ୀଅସୁରୁଣୀ ହୁଳହୁଳି ଶୁଣି ତାର ପିଲାମାନଙ୍କୁ ମାରି ଖେଦାଇଲା,

କହିଲା ମୋ ଦୁଆରେ ତ ରାଣୀ କି ଗୋପାଣୀ କି କଣ ଗୋଟାଏ ପକା-
ଇଚ, ଯାକୁ ଉଠାଅ । ଅନୁଚରମାନେ ମାଡଗାଳ ଖାଇ ସେ କାଠ
ଗରକୁ ନେଇ ସେ ଅମ୍ବଗଛ ମୂଳେ ପକାଇ ଦେଇ ଆସିଲେ । ସେତି-
ବେଳକୁ ସଞ୍ଜ ଲାଗି ଥିଲା, ଏ ପିଲାଗୁଡ଼ିକ କାଠଗଡରୁ ବାହାରିଲେ,
ଜଣସ୍ତେ ଜଣସ୍ତେ ଘରକୁ ଯିବାକୁ ବସିଲେ । ଯାଉଁ ବାଟରେ
ବଣାହୋଇ କିଏ କୁଆଡ଼େ ଗଲେ । ସବା ସାନ ଝିଅଟି ବୁଲି ୨
ଗୋଟିଏ ରଜାନଅର ଦେଖିଲା, ସେ ନଅର ଦୁଆରେ ଗୋଟିଏ କାଠ
ଖମ୍ବ ଥିଲା, ସେଇଟି ପଚାରିଲା, କହିଲା ଯେମନ୍ତ ସତ୍ୟଯୁଗ ହୋଇଥିବ,
ଏ ଖମ୍ବ ଫାଟିଯିବ ମୁଁ ତହିଁରେ ପଶିଯିବି । କାଠଖମ୍ବ ଫାଟିଗଲା, ସାଧବ
ଝିଅ ତହିଁରେ ପଶିଗଲା । ସେଇଥିରେ ଥାଏ; ରାତିରେ ସମସ୍ତେ ଖାଇ
ପିଇ ଶୋଇଲେ, ଏବେଥିରୁ ପଦାକୁ ବାହାରେ, ଖାଧୁଆପାଧୁଆ କରେ,
ଫେର ସେଇଥିରେ ପଶିଯାଏ, ଏହିପରି ସବୁଦିନେ କରୁଥାଏ । ସେ
ରଜାର ପୁଅ ସବୁଦିନେ ଶୁଣେ ଯେ ଗୋଟିଏ କିଏ ଦୁଆରେ ଝୁଣୁ ୨
ହୋଇ ଆସ ଯା କରୁଚି, ମାତ୍ର କିଛି ବୁଝି ପାରେ ନାହିଁ । ଦିନେ
ସେ ରଜାଙ୍କ ଦୁଆରେ ପାଲା ହେଲା, କେତେ ଲୋକ ଦେଖିବାକୁ
ଆସିଲେ । ସାଧବଝିଅ କାଠଖମ୍ବରୁ ବାହାରି ପାଲା ଦେଖିବାକୁ ଗଲା ।
କେହି ଦେଖିବେ ନାହିଁ ବୋଲି ମେଘନାଦ ପାଚେରୀ ଉପରେ ବସି
ପାଲା ଦେଖୁଥାଏ । ରଜାପୁଅ ସେଠାରେ ଘୋଡାଦୌଡ କରୁଥାଏ,
ତାର ପାଚେରୀ ଉପରକୁ ନଜର ପଡଗଲା, ଦେଖେ ଯେ ଉତ୍ତମ
ସୁନ୍ଦରୀ ସ୍ତ୍ରୀଟିଏ ବସିଚି, ତାକୁ ଦେଖି ପାଚେରୀ ଅଡକୁ ଦୌଡ଼ି
ଆସିଲା । ରଜାପୁଅ ଆସିବାର ଦେଖି ସାଧବ ଝିଅ ଦୌଡ଼ି ଆସି
କାଠଖମ୍ବରେ ପଶିଗଲା, ରଜା ପୁଅ ଆଉ ଏହା ଦେଖି ପାରିଲା ନାହିଁ
ପାଚେରୀ ଉପରୁ ଦୌଡ଼ିଆସିଲାବେଳେ ସାଧବଝିଅ ଗୋଡ଼ରୁ ନେପୁର
ପଡିଏ ଖସିପଡ଼ି ଥିଲା, ରଜାପୁଅ ତାକୁଇ ପାଇ ରଖିଥାଏ, ସବୁବେଳେ
ଦେଖୁଥାଏ । ମନେ ୨ ଖାଲି ଭାବ ହେଉଥାଏ ଏ ନେପୁରର ଏଡ଼େ

ସୁନ୍ଦର, ସେ ସ୍ତ୍ରୀ କେତେ ସୁନ୍ଦରୀ ହୋଇ ନ ଥିବ । ଏହିପରି ଝିଅଟିର ? ରଜାପୁଅର ଅଙ୍ଗ ଅବସ୍ଥା (୧) ରହିଲା ନାହିଁ, ଖାଲି କଣ୍ଟା ହୋଇଗଲା । ଅନେକ ବଇଦ ଲଗିଲେ, ରାଇଜର ଚେଷ୍ଟା ହେଲା; କାହିଁରେ କିଛି ଭଲ ହେଲା ନାହିଁ । ରଜାପୁଅ ବରାବର ମଲାସମାନ ହୋଇଗଲା । ବଞ୍ଚିବାରର ଆଉ ଆଶା ନାହିଁ, ରଜାପୁଅ କହିଲା ମୋର ଭଉଣୀମାନଙ୍କୁ ଡକାଅ ମୁଁ ସେମାନଙ୍କୁ ଦେଖିବି । ଭଉଣୀମାନଙ୍କ ପାଖକୁ ଖବର ଗଲା, ସମସ୍ତେ ଆସିଲେ, ଖାଲି ସାନଭଉଣୀ ଆସି ନଥାଏ । ସାନ ଭଉଣୀ ଘର ବହୁତ ଦୂର, ଅସ୍ତ ଅସ୍ତ ବାଟରେ ଘୋଡାମାନଙ୍କୁ ଖରା ବରଷା ପାଇବାକୁ ପଡିଲା । ଗୋଟିଏ ଗଛମୂଳେ ସୁଆରକୁ ଛାଡ଼ି ଦେଇ ଗଉଡ଼ମାନେ ଜଳଖିଆ କରିବାକୁ ଗଲେ । ରଜାଝିଅ ଯେଉଁଠି ଥାଏ ସେ ବରଗଛରେ ଗୋଟାଏ ଫୁଲଶାଗୁଣୀର ବସା । କୋଉଠି ମଡ଼ା ପଡ଼ିଥିଲା ଯେ ଶାଗୁଣୀ ଖାଇକରି ଆସିଥାଏ, ପିଲାଙ୍କପାଇଁ ଆଣି ନ ଥାଏ ପିଲାଯାକ କେଁକଟର ଲଗାଇ ଥାନ୍ତି, ମା ତୁ ଖାଇଲୁ ଆମପାଇଁ ଆଣିଲୁ ନାହିଁ, [ଶାଗୁଣୀ କହିଲା ତମେ ସବୁ କାହିଁକି ସେମିତି ହେଉଛ, ରଜାପୁଅ ଏହିକ୍ଷଣି ମରିବ ତମେ ଅନନ୍ଦରେ ଖାଇବ' । ପିଲାଯାକ କହିଲେ ନାହିଁ ମା ସେ କାହିଁକି ମରିବ, ଆମେ ପଛକ ନ ଖାଉଁ ସେ ଜୀଇ ଥାଉ । ଶାଗୁଣା କହିଲା ତାକୁ ଆଉ କିଏ ବଞ୍ଚାଇବ ତାରର ସବୁ ଏମନ୍ତ୍ର କଥା ହେଉଛି, କିଏ ଜାଣିଥାନ୍ତା କି ସେ କାଠ ଖମ୍ଭକୁ ଭାଙ୍ଗି ଦିଅନ୍ତା ଯେ ସେ ସାଧବଝିଅ ବାହାରି ପଡନ୍ତା, ତାକୁ ଦେଖିଲାକ୍ଷଣ ରଜାପୁଅ ଦେହରେ ଜୀବନ ପଶିଯାନ୍ତା । ଏହା ସବୁ ସାନଭଉଣୀ ଶୁଣି ସୁଆରୁ ଉଠାଇବାକୁ ଗଉଡ଼ ସାଙ୍ଗେ ଉଚ୍ଚନ ଲଗାଇଲା । ଗଉଡ଼ମାନେ ସୁଆରି ନେଇ ରଜାଙ୍କ ଦୁଆରେ ଛାଡ଼ିଲେ

---

(୧) ଦେହର ବଳ ସ୍ୱାସ୍ଥ୍ୟ ।

ରଜାଙ୍କ ଘରେ କାନ୍ଦବୋବାଳି ପଡ଼ିଥାଏ, ତାହାଙ୍କର ମନରେ ସୁଖ ନ ଥାଏ । ସାନଭଉଣୀ ଯାଇ ଦେଖେ ଯେ ଭାଇ ଶୋଇଛନ୍ତି, ହଠାତ୍ ତାହାକୁ କିଛି ନ କହି ଗୋଟାଏ କୁରାଢ଼ି ନେଇ ଆସି, କାଚଖମ୍ବରେ କଠର ପାହାରେ ଦେଲା । କାଚଖମ୍ବ ଚୂନା ହୋଇଗଲା, ସାଧବ ଝିଅ ତଣ୍ଟିରୁ ତାହାର ପଡ଼ିଲା । ତାକୁ ଧରିନେଇ ଗଲେ, ରଜାପୁଅ ଆଗରେ ଛିଡ଼ା କରିଦେଲେ, ତାଙ୍କୁ ଦେଖି ତା ଦେହରେ ଜୀବ ପଶିଲା । ରଜାପୁଅ କ୍ରମେ ୨ ଭଲ ହୋଇଗଲା, ସେହି ସାଧବ ଝିଅକୁ ବାହା ହେଲା, ଭଉଣୀ ମାନଙ୍କୁ ହଟେଇ ଖେଦେଇ ବିଦା କଲା, ଆନନ୍ଦରେ ସୁଖ ରାଜ୍ୟ କଲା, ମୁଁ ଗଲାକୁ କଥା ନ କହିଲି । ମୋ କଥାଟି ସରିଲା ଇତ୍ୟାଦି ॥

——❀•❀——



## ମଣ୍ଡାଗଛ ବା ଗୌଡ଼ପିଲା କଥା ।

ଗୋଟିଏ ଗଉଡ଼ୁଣୀଏ ଯେ ତାର ଗୋଟିଏ ପୁଅ । ଗଉଡ ଟୋକାଟି ନିତି ଗାଈ ଜଗିବାକୁ ଯାଏ, ବଣ ପାଖରେ ଗୋଟାଏ ମଣ୍ଡା-ଗଛ ଥାଏ ତହିଁରେ ଚଢ଼େ, ମଣ୍ଡାପିଠା ଖାଏ, ବେଳବୁଡ଼ ହେଲା-କ୍ଷଣି ଗାଈ ନେଇ ଘରକୁ ଆସେ । ଦିନକର ବୁଢ଼ୀ ଅସୁରୁଣୀ ଆସିଲା କହିଲା ହଇରେ ପୁଅ କଣ ଖାଉଛୁ କି ? ଗଉଡଟୋକା କହିଲା ମଣ୍ଡାପିଠା ଖାଉଛି । ଅସୁରୁଣୀ କହିଲା ଅରେ ପୁଅ ମତେ ଗୋଟିଏ ଦିଅନ୍ତୁ । ଗଉଡଟୋକା ମଣ୍ଡାଟିଏ ପକାଇ ଦେଲା । ବୁଢ଼ୀ ଅସୁ-ରୁଣୀ କହିଲା, ଅରେ ପୁଅ ମୋ ହାତକୁ ଗୋଟାଏ ଦେ । ଗଉଡ-ଟୋକା ମଣ୍ଡାପିଠାଟିଏ ତା ହାତକୁ ବଢ଼େଇ ଦଉ ଦଉ ଅସୁରୁଣୀ

କଣକଲା ନା ନେଇଗଲା ଗଉଡ଼ ଟୋକା'କୁ, ଗୋଟାଏ ମୁଣିରେ ପୁରା-ଇଲା, ନେଇ କର ଘର ମୁଣ୍ଡେଇକର । ଅଧବାଟରେ ଦେଖନ୍ତି ବୁଢ଼ୀ ଅସୁରୁଣୀକି ପୋଖରୀ ମାଡ଼ିଲା, ବାଟରେ ଥୋଇ ଦେଲା ମୁଣି ଟିକି, ପୋଖରୀଗଲା । ଗଉଡ଼ ଟୋକା କଣକଲା, ମୁଣିକି ଚିର ଦେଲା, ସେଥିରୁ ବାହାରିଲା, ସେ ମୁଣିରେ ଗୁଡ଼ାଏ ପଙ୍କ ପାଣି କଣ୍ଟା ଏଣୁ ତେଣୁ ପୂରାଇ ଦେଲା, ଘରକୁ ପଳେଇ ଆସିଲା । ବୁଢ଼ୀ ଅସୁରୁଣୀ ଆସିଲା ମୁଣି ଟିକି ମୁଣ୍ଡାଇଲା, ନେଇକର ଗଲା । ବାଟରେ କଣ ହେଉ ଥାଏ ନା ବୁଢ଼ୀଅସୁରୁଣୀ ମୁଣ୍ଡରେ କଣ୍ଟା ଫୋଡ଼ି ହୋଇ ଯାଉ ଥାଏ । ଏ କହୁଥାଏ ଗୁଲ ମୁଣ୍ଡପୋଡ଼ା, ଘରକୁ ଗଲେ ତୋ ରଙ୍ଗ ବୁଝିବି । ଏହିପରି ବାଟଯାକ ଚିଡ଼ିକର ଯାଉଥାଏ । ଘରକୁ ଗଲା ମୁଣିକି ଦୁମ୍ କିନା କଚାଡ଼ି ଦେଲା ଫିଟେଇ କରି ଦେଖିଲା । ଦେଖିଲା କେବଳ ଅଉ ଗଉଡ଼ଟୋକା ସେଥିରେ ନାହିଁ, ଏଣୁ ତେଣୁ ଗୁଡ଼ାଏ ପଡ଼ିଛି । ବୁଢ଼ୀ ଅସୁରୁଣୀ କହିଲା ଆରେ ଆରେ ମତେ ଠକି ଦେଇ ଗଲା ବାହାରି, ଅଉ କଣ କରିବି । ଚୁପ ହୋଇ ରହିଲା । ଦି ଚାରି ଦିନ ଛାଡ଼ିଦେଲା, ଫେର୍ ଗଲା ସେହି ମଞ୍ଚାତଳ ପାଖକୁ । ଦେଖିଲା ଗଉଡ଼ଟୋକା ଗଛରେ ଚଢ଼ି ମଞ୍ଚା ପିଟାଉଛି, ବୁଢ଼ୀ ଅସୁରୁଣୀ କହିଲା, ପୁଅରେ ମତେ ଟୋଟିଏ ଦିଅନ୍ତୁ । ଗଉଡ଼ଟୋକା କହିଲା ଆଉକଣ, ସେ ଦିନତ ଧରିକରି ନେଇ ଗଲୁ, ଆଜ କାହିଁକି ଦେବି ? ତଳେ ପଡ଼ିଛି ଗୋଟେଇକରି ଖାଉନାହୁଁ । ଅସୁରୁଣୀ କହିଲା ନାହିଁରେ ପୁଅ, ସେଦିନ ସିନା ନେଇଗଲି ଆଜ ନେବି ନାହିଁ, ମୋ ହାତକୁ ଟୋଟିଏ ଦେ । ଗଉଡ଼ଟୋକା ପିଟାଟିଏ ତା ହାତକୁ ଦେଲା ବୁଢ଼ୀଅସୁରୁଣୀ କଣକଲା ନା ତା ହାତକୁ ଧରି ତଳୁ ଓଟାରିଆଣିଲା ଫେର୍ ମୁଣିରେ ପୂରାଇଲା, ନେଇକରି ଘରକୁ ଗଲା, ଅଉ କେଉଁଠି ଥୋଇଲା ନାହିଁ ବାଟରେ, ବରାବର ଘରକୁ ନେଇଗଲା । ଘରେ ମୁଣିରୁ ବାହାର କରି, ଝିଅକୁ ଡାକି କହିଲା ଝିଅ ଲୋ ମୁଁ ଯାଉଛି

ଗାଧୋଇ, ଯାକୁ ଭଲକର ଗନ୍ଧବାଡ଼ି ରଖ । ଝିଅ ଗଉଡଟୋକାକୁ ଏପାଖ ସେପାଖ କର ଦେଖିଲା, ଦେଖିଲା ତା ମୁଣ୍ଡରେ ଘଇଳର ବାଳ । ଅସୁରୁଣୀ ଝିଅ କହିଲା ହଇରେ ପୁଅ ତୋ ମୁଣ୍ଡରେ ଏତେ ବାଳ କୋଉଠୁ ହେଲା ? ଏ ଟୋକା ମିଛରେ କହିଲା; ମୋ ମା ମୋ ମୁଣ୍ଡକୁ ଢେଙ୍କିରେ କୁଟିଦେଲେ ଯେ ବାଳ ବଢ଼ିଯାଏ । ଅସୁରୁଣୀଝିଅ କହିଲା ତୁ ତେବେ ମୋ ମୁଣ୍ଡ ଢେଙ୍କିରେ କୁଟିଦିଅନ୍ତୁ । ଗଉଡ଼ଟୋକା କହିଲା ମୁଁ କଣ ନାହିଁ କରୁଛି ? ଗଉଡଟୋକା ଢେଙ୍କି ଟେକିଦେଲା, ଅସୁରୁଣୀ ଝିଅ ମୁଣ୍ଡକୁ ଦେଖାଇ ଦେଲାଯାଉଁ, ଏ କଣକଲା ଢେଙ୍କି ଛାଡ଼ିଦେଲା ଯେ ତା ମୁଣ୍ଡ କୁଟି ହୋଇଗଲା । ଅସୁରୁଣୀଝିଅ ଛଟପଟ ହୋଇ ମରିଗଲା । ସେଇଠୁ, ଗଉଡଟୋକା ଅସୁରୁଣୀ ଝିଅଠାରେ ଯେତେ ଅଳଙ୍କାର ଥିଲା ତାକୁ ସବୁ ଲଗାଇଲା, ତା ଲୁଗା ପିନ୍ଧିଲା, ତା ବେଶ ଧରି ତାକୁ ଠିକି ଠିକି କରି ବନାଇଲା, ଗନ୍ଧବାଡ଼ି ଥୋଇଦେଲା । ବୁଢ଼ୀ ଅସୁରୁଣୀ ଗାଧୋଇ ଆସିଲାକ୍ଷଣି ତାକୁ ବାଢ଼ିଦେଲା । ସେ ଖାଇ ବସିଲା, ଗଉଡଟୋକାକୁ କହିଲା ଝିଅ ଲୋ ତୁ ଖାଇ ବସୁନାହୁଁ । ଏ କହିଲା ନାହିଁ ମା ତୁ ଖାଇସାର ମୁଁ ପଛରେ ଖାଇବି । ବୁଢ଼ୀ ଅସୁରୁଣୀ ଖାଇ ସାରଲା, କହିଲା ଝିଅ ଲୋ ମୋ ମୁଣ୍ଡରୁ ଦେଖ, ଉକୁଣୀ ଦେଖନ୍ତୁ, ଗଉଡ଼ଟୋକା ମୁଣ୍ଡ ଦେଖିଲାବେଳକୁ ଯା ମୁଣ୍ଡରେ ଜମା ବାଳ ନାହିଁ ଗୋଟିଏ ବାଳ ହୁଲୁ ହୁଲୁ ହୋଇ ହଲୁଚ । ଗଉଡଟୋକା କହିଲା ହଇଲୋ ମା, ତୋ ମୁଣ୍ଡରେତ ଜମା ବାଳ ନାହିଁ, ଏ ଗୋଟିକ କାହିଁକି ଅଛି ? ଅସୁରୁଣୀବୁଢ଼ୀ କହିଲା ଆଲୋ ଝିଅ ସେ ବାଳଟିରେ ମୋର ଜୀବନ ଅଛି, ତାକୁ ଛିଣ୍ଡାଇଦେଲେ ମୁଁ ମରିଯିବି । ଗଉଡଟୋକା ଯା ଯାଉଁ ଶୁଣିଲା, ସେ ବାଳଟିକି ଟୁଟକରି ଛିଣ୍ଡେଇଦେଲା ଯେ ବୁଢ଼ୀ ଅସୁରୁଣୀ ମରିଗଲା । ଅସୁରୁଣୀକି ପୋପାଡ଼ି ଦେଇ ଗଉଡଟୋକା ଘରକୁ ଆଇଲା, ବାପମାଙ୍କ ଆଗେ ସବୁ କଥା କହିଲା । କେତେଦିନ

ବାଦ୍ ଗଉଡଙ୍କୋକା ବଭ୍ରୀ ହେଲା, ପୁଣରେ ଘର ଦୁଆର କଲା, ମୁଁ ଗଳରୁ କଥା ନ କହିଲି । ମୋ କଥାଟି ସରଲା ଇତ୍ୟାଦି ।



## ଡାଳିମ୍ବକୁମର କଥା ।

ଗୋଟିଏ ରଜାଟିଏ ତାର ଦୁଇ ଭାରିଯା । ତାହାର କିଛି ସନ୍ତାନ ହେଲ ନାହିଁ । ରଜା ଭାରି ଚିନ୍ତା କରଥାନ୍ତି, ଖୁବ୍ ଦାନ ଧ୍ୟାନ କରୁଥାନ୍ତି କେମନ୍ତ ଗୋଟିଏ ପୁଅ ହେବ । ଦିନକର ଜଣେ ସିଦ୍ଧ ପୁରୁଷ ଆସିଲେ, ସେ ପଚାରିଲେ ରଜାଙ୍କର ଏତେ ଦାନ ଧ୍ୟାନ କାହିଁକି ହେଉଛି ? ମନ୍ତ୍ରୀ କହିଲେ ରଜାଙ୍କର କିଛି ପୁଅ ଝିଅ ହେଉନାହିଁ ବୋଲି ଧର୍ମ କରୁଛନ୍ତି । ଏ ବିଧାତା ପୁରୁଷ ଛଦ୍ମବେଶରେ ଆସିଥାନ୍ତି । ସେ ରଜାଙ୍କୁ ଡକାଇଲେ, ତାଙ୍କୁ ଗୋଟିଏ ଡାଳିମ୍ବଟିଏ ଦେଇ କହିଲେ, ଏ ଫଳଟି ନେଇ ତମ ରାଣୀଙ୍କ ଭିତରୁ ଯେ ଆଗେ ଋତୁମତୀ ହେବ, ଋତୁସ୍ନାନଦିନ ତାକୁ ଖାଇବାକୁ ଦେବ ଯେ ସେ ଖାଇ ଗର୍ଭବତୀ ହେବ । କିଛି ଦିନ ଗଲା; ସାନ ରାଣୀର ଆଗେ ଋତୁ ହେଲା । ରଜା ତାକୁ ସେ ଡାଳିମ୍ବ ଫଳଟି ଦେଲେ, ସେ ଖାଇ ଗର୍ଭବତୀ ହେଲା । ବଡ ରାଣୀ ସାନ ରାଣୀକୁ ଜମା ଦେଖିପାରେ ନାହିଁ ତହିଁରେ ଫେର୍ ଏ ଗର୍ଭ ହେବାର ଦେଖି, ଏଥର ହିଂସା ଦ୍ୱିଗୁଣ ହେଲା । ଏ ଭଗ୍ନ ଦୁଃଖିନୀରେ ଥାଏ କିପରି ସାନ ରାଣୀର ପିଲାକୁ

ନଷ୍ଟ କରିବ । ଦିନେ ବଡ଼ରାଣୀ ଧାଈ ହାତରେ ଗୁଡ଼ାଏ ଜହରବଡ଼ି ଦେଇ ପଠାଇଲା । ଧାଈ ଯାଇ ସାନ ରାଣୀଙ୍କୁ କହିଲା ବଡ଼ ରାଣୀ ଯାଆକୁ ଦେଇଛନ୍ତି, ତମେ ଖାଇବ । ଏ ସେହି ସାଧୁଙ୍କ ନାମରେ ତାକୁ ଖାଇଦେଲା; ତାର କିଛି ହେଲା ନାହିଁ । ଦଶମାସଦଶଦିନ ପୂରିଲାରୁ ସାନ ରାଣୀର ଗୋଟିଏ ପୁଅ ହେଲା । ରଜା ବଡ଼ ଖୁସି ହେଲେ ରାଜ୍ୟରେ ଢେଙ୍ଗୁରା ଦିଆଗଲା, ସମସ୍ତେ ଆନନ୍ଦ ଉତ୍ସବ କଲେ । ଷଠୀ ପଞ୍ଚୁଆତି ବାରଯାତ୍ରା ଏମାନ ଗଲା, ଏକୋଇଶା ଦିନ ସେ ସିଦ୍ଧପୁରୁଷ ଫେର୍ ଆସିଲେ, ଏ ପୁଅର ନାମ ଡାଳିମ୍ବକୁମର ଦେଇ-ଗଲେ । ସାନରାଣୀକି ଗୋପନରେ କହିଗଲେ ତୋର ପୁଅ ସହ-ଜରେ ମରିବ ନାହିଁ । ତମର ଯେଉଁ ଦାଣ୍ଡ ପୋଖରୀ ଅଛି, ତହିଁରେ ଗୋଟାଏ ରାଘବମାଛ ଅଛି, ତାର ପେଟଭିତରେ ଗୋଟିଏ ଫରୁଆ-ଅଛି, ତହିଁରେ ଯେଉଁ ଡାଳିମ୍ବହାର ଅଛି, ଏହାର ଜୀବନ ସେଥିରେ ଅଛି । ସେ ହାରକୁ ଫରୁଆ ଭିତରୁ ବାହାର କରି ଯଦି ବେହ୍ନୁ-ଲଗାଇବ (୧), ତେବେ ଏ ପୁଅ ମରିବ । ଏହା କହି ସେ ସିଦ୍ଧ ପୁରୁଷ ଗଲେ ବାହାରି । ଡାଳିମ୍ବ କୁମରକୁ ଛ ସାତ ବର୍ଷ ହୋଇଗଲା ପାଠ ହେଉକା ଖୁବ୍ ପଢ଼ିଲା । ତାର ପାରାରେ ବଡ଼ ଶରଧା, ବହୁତ ପାରା ପୋଷିଥାଏ । ପାରାଙ୍କୁ ଚରିବାକୁ ଛାଡ଼ିଦେଲାବେଳେ, ଦିଇଟା ଗୋଟାଏ ବଡ଼ରାଣୀ ଦୁଆରକୁ ଯାନ୍ତି ବାହାରି ଚରିବାକୁ । ବଡ଼ରାଣୀ ତାଙ୍କୁ ସବୁ ଧରି ରଖେ, ଏ ମାଗିଲେ ଯାଆକୁ କହେ ଯା ତୋ ବୋଉକୁ ପଚାରିବୁ ତୋ ଜୀବନ କେଉଁଠି ଅଛି, କହି ଆସି ଯେବେ କହିବୁ, ତେବେ ତୋ ପାରା ଦେବି । ଡାଳିମ୍ବକୁମର ଯାଇ ମାକୁ ପଚାରିଲ, ତା ଜୀବନ କୋଉଠି ଅଛି, ମା କହେ ତୁ ସେଥିରୁ କଣ ପାଇବୁ ? ଏହିପରି କହି ଭୁଲାଇଦିଏ । ବଡ଼ ରାଣୀ ପାରା ଦିଏ

୧ । ପିନ୍ଧିବ ।

ନାହିଁ । ଏହିପରି ଗୋଟିଏ ଦେଖି ରଖୁ୨ ବଡରାଣୀ ସବୁ ପାଶଯାକ ରଖିଲା । ଏ ମାଗିଲାକୁ କହିଲା ତୋ ଜୀବନ କୋଉଠି ଅଛି ନ କହିଲେ ମୁଁ କେବେହେଁ ମାସ ଦେବି ନାହିଁ । ତୋ ବୋଉ ଯଦି ନ କହୁଛି, ତେବେ ତୁ ରୁଷିଲେ ସେ କହିବ । ଏ ଗଲା ସେଦିନ, ଖାଲି ଛଲେ ଚଢ଼ିଲା ମା ସଙ୍ଗେ ଏକଯିଦ୍ କଲା କହ ମୋ ଜୀବନ କୋଉଠି ଅଛି ? ମା କହିଲା ଏ କଥା ତୋତେ କିଏ ଶିଖେଇଛି ? ଏ କହିଲା ମତେ କେହି ଶିଖେଇ ନାହିଁ, ମୁଁ ନିଜେ ଜାଣିବି ମତେ କହ । ଏହିପରି ଲଗାଇ୨ ମାଠାରୁ ସବୁ ଜାଣିଲା ଯା ଜୀବନ କୋଉଠି ଅଛି ଆସି ବଡରାଣୀ ଆଗରେ ସବୁ କହିଦେଲା । ବଡରାଣୀ ଶୁଣିଲା ଯେତୁଁ ସବୁ ପାଖ ଗୁଡଦେଲା । ତହିଁ ଆର ଦିନ ବଡରାଣୀ କଣ କଲା ଧାଈ ହାତରେ ରଜାଙ୍କ ପାଖକୁ ଖବର ଦେଲା, କହିଲା ରଜାଙ୍କୁ କହିବୁ, ବଡରାଣୀଙ୍କ ଦେହ ଦୁଃଖ ହୋଇଛି, ଦାଣ୍ଡ ଗାଡ଼ିଆ ମାଛ ମରିବେ, ସେଥିରେ ଯେଉଁ ରାଘବମାଛ ଅଛି ତାକୁ ଖାଇଲେ ତାଙ୍କ ଦେହ ଭଲ ହେବ । ରଜା ତ ଆଉ ଏତେ କଥା ଜାଣନ୍ତି ନାହିଁ । କହିଲେ ହଉ ଜାଲ ପକାଅ । ବଡ ଜାଲ ଥରେ ବୁଲାଇ ଆଣି ଆଉ ଥରେ ବୁଲାଇ ଆଣିଲା ବେଳକୁ ସେହି ରାଘବମାଛ ପଡ଼ିଲା । ତାକୁ ବଡ଼ ରାଣୀଙ୍କ ଉଆସକୁ ନେଇଗଲେ । ବଡ଼ ରାଣୀ ନିଜେ ସେ ମାଛକୁ କେଲେଇ ବସିଲା । ତାକୁ ଦଗର ( ୧ ) କରି କାଟି ଦେଲା ପେଟକୁ ଚିର ଦେଇ ହର ଫରୁଆକୁ କାଢି ରଖିଲା, କହିଲା ନଅ ଯାକୁ କାଟିକୁଟି ତରକାରି କର । ଏ ଫରୁଆରୁ ହାରଟିକ କାଢି ବେକରେ ପକାଇଲା ଯୋଉଠୁ ତେଣେ ଛାଲମ୍ବିକୁମରଟି ମରି-ଗଲା । ସାନରାଣୀ କାନ୍ଦି ଉଠିଲା, ଆଉ ସମସ୍ତେ ଯାଇ ଦେଖନ୍ତି ଯେ

---

୧ ଦ୍ବିଖଣ୍ଡ ।

ଡାଳିମ୍ବକୁମର ମରି ପଡ଼ନ୍ତି । ରଜା ବଡ ବ୍ୟସ୍ତ ହେଲେ, କହିଲେ ନିଅ ତାଙ୍କୁ ଦାହାକରି ଦିଅ (୧) ଗୁଆଘିଅ ଚନ୍ଦନ କାଠରେ । ସାନ ରାଣୀ କହିଲା ମୋ ପୁଅ ପୋଡ଼ା ହେବ ନାହିଁ କି ପୋତା ହେବ ନାହିଁ, ବନସ୍ତ ଭିତରେ ଗୋଟିଏ ଘର ତୋଳା ହେବ, ସେ ଘରଭିତରେ ସବୁ ଖାଇବା ପଦାର୍ଥ ରହିବ, ସେଠାରେ କୂଅ ପୋଖରୀ ଖୋଳା ହେବ; ଶୁଆସାରୀଯାକ ପଞ୍ଜୁରେ ଝୁଲିବ, ଫୁଲ ବଗିଚା ହେବ ମୋ ପୁଅ ସେଇଥିଭିତରେ ରହିବ । ସବୁ ସେହିପରି ହେଲା । ଡାଳିମ୍ବକୁମରକୁ ନେଲେ ସେମାନେ ଖଟସୁଦ୍ଧା (୨) ସେହି ଘରେ ଥୋଇଦେଇ ଆସିଲେ । ଏଥିଭିତ୍ରେ ବଡ ରାଣୀ କଣ କରେ, ସେ ହାରକୁ ଦିନଯାକ ଲଗାଏ ରାତି ହେଲାକ୍ଷଣି ଥୋଇଦିଏ, ରାଜା ଦେଖିବେ ବୋଲି । ଡାଳିମ୍ବକୁମର ଦିନଯାକ ମରେ, ରାତି ହେଲାରୁ ଜୀଇଁ ଉଠେ । ହାର ଥୋଇଦେଲାକ୍ଷଣି ଉଠି ଖାଏ ପିଏ, ଫୁଲ ବଗିଚାକୁ ଯାଏ ବୁଲେ, ଏହିପରି ରାତିଯାକ କରେ, ସକାଳ ହେଲାରୁ ମରି ଶୁଏ । ଆରଦେଶ ରାଜା ଝିଅକୁ ବରଘର ଲାଗିଲା, ଯେଉଁଠି ଯେତେ ଖୋଜିଲେ କେଉଁଠି ବର ଘଟଣା ହେଲାନାହିଁ । ରାଜା ବଡ଼ ବ୍ୟସ୍ତ ହୋଇ ପଣ୍ଡିତ ମାନଙ୍କୁ ଡକାଇଲେ, ପଚାରିଲେ ଯାଙ୍କୁ କାହିଁକି ବର ମିଳୁ ନାହିଁ । ଏମାନେ ଗଣନା କରି କହିଲେ, ଯେ ଦିନରେ ମରୁଥିବ ରାତିରେ ଜୀଇଥିବ ଯାଙ୍କୁ ସେ ବିବାହ ହେବ । ରାଜା କହିଲେ ଏ ଅଲକ୍ଷଣୀଟାର ମୁହଁ ଚାହିଁ ନା ଗୋଟାଏ ମଲା ମଣିଷ ବାହା ହେବ, ଏମାନେ ଘୋଡାଏ ବର ଫେରି କୋଉଠି ମିଳିବ । ଯାଙ୍କୁ ବାହାର କରିଦିଅ । ସେ ଝିଅକୁ ବାହାର କରି ଦେଲେ । ଝିଅ ବୁଲି ବୁଲି ଆସି ଯେଉଁ ବନସ୍ତରେ ଡାଳିମ୍ବକୁମର

---

୧ ଦାହକରିଦିଅ । ୨ ଖଟ ସହିତରେ ।

ଅଛୁ, ସେଇଠି ପହଞ୍ଚିଲା ଦେଖିଲା ଯେ ବନସ୍ତ ଭିତରେ ଗୋଟିଏ ଘର ଦିଶୁଛି, ଯାଇଁ ସେ ଫୁଲବଗିଚ୍ଚାରେ ରହିଲା । ଆପଣା ଦୁଃଖରେ କାନ୍ଦୁଥାଏ । ସଞ୍ଜ ହେଲାରୁ ରଜାପୁଅ ଜାଇ ଉଠିଲା ଗାଧୋଇ ଆସି ରନ୍ଧାବାଢ଼ି କଲା, ଖାଇଲାପିଇଲା, ଫୁଲବାଡ଼ିକି ଗଲାବେଳକୁ, ଏ ବସି କାନ୍ଦୁଛି । ଡାଳିମ୍ବକୁମର ଯାଇକୁ ସବୁ ପଚାରିଲା । ଏ କହିଲା ମୁଁ ସେ ଦେଶର ରଜାଝିଅ, ମୋ ପାଇଁ ବରଘର ଲାଗୁଥିଲା; ପଣ୍ଡିତମାନେ ଏପରି କହିବାରୁ ବାପା ମତେ ବାହାର କରି ଦେଇଛନ୍ତି । ଡାଳିମ୍ବ-କୁମର କହିଲା, ତମରି ବର ମୁଁ, ବିଧାତା ଘଟେଇ କରିଛି, ମୁଁ ଦିନରେ ମରେଁ. ରାତିକି ବଞ୍ଚେ । ଏହା କହିଲା, ରଜାଝିଅକୁ ଘରଭିତରକୁ ନେଇଗଲା । ଦିହେଁ ଆନନ୍ଦରେ ରହିଲେ ଖାଇଲେ ପିଇଲେ, ବସିଲେ ଉଠିଲେ । ଦିନକର ରଜାଝିଅ ପଚାରିଲା ଡାଳିମ୍ବକୁମରକୁ ତେମେ କାହିଁକି ଏପରି ହୁଅ, ଦିନରେ ମରି ରାତିରେ ଜୀଅ । ଏ ଆଦ୍ୟରୁ ଅନ୍ତ ପର୍ଯ୍ୟନ୍ତ ସବୁ କହିଗଲା । ରଜାଝିଅ ଶୁଣି ମନ କଥା ମନେ ରଖିଥାଏ । କେତେଦିନ ଗଲା ଏହାର ଗର୍ଭ ହେଲା ଗୋଟିଏ ପୁଅ ଜନ୍ମ ହେଲା । ପୁଅକୁ ଦି ଚାରି ବର୍ଷ ହୋଇଗଲା, ଦିନକର ଏ କଣ କଲା ପୁଅକୁ ବାପ ପାଖରେ ଛାଡ଼ିଦେଲା, ଗୋଟିଏ ଭଣ୍ଡାରୁଣୀ ବେଶ ଧରି ଟୋକେଇଟିଏ କାଖେଇଲା ଚାରି ପଚାରିକା ଗଲା, ରଜାଘରକୁ । ଅଗେ ସାନରାଣୀ ପାଖକୁ ଗଲା, ତାଙ୍କୁ ଦଣ୍ଡବତ କଲା, ପଚାରିଲା ବଡ଼ରାଣୀ କେଉଁଠି ଅଛନ୍ତି । ସାନରାଣୀର ପୁଅ ମଲାଦିନୁ ମନରେ ଜମା ସୁଖ ନାହିଁ, କହିଲା ସେ ଘରେ କେଉଁଠି ଅଛନ୍ତି ଦେଖ ଏ ଖୋଜି କା ବଡରାଣୀଙ୍କ ପାଖକୁ ଗଲା ତାଙ୍କୁ କହିଲା କେତେ-ଦିନ ହେଲା ନଖ ତୋଳା ହୋଇ ନାହିଁ ଅସ ତୋଳି ଦେବି ବଡରାଣୀ ପଚାରିଲେ ତୁ କିଏ ? ତୋର ଘର କେଉଁଠି ? ଏ କହିଲା ମୋ ଘର ଏ ଦେଶରେ ନୁହେଁ, ମୁଁ ତମ ଭଣ୍ଡାରୁଣୀର ମଉଳାଝିଅ

ଭଉଣୀ, ଆସ ଉଲଟି ତେଣେ ମୋ ପୁଅ କାନ୍ଦୁଥିବ, ଆସ ଟୋକି ନଖ ତୋଳି ଦେଇ ଯାଇଥିବ, କାଲି ପୁଅକୁ ଘେନିକରି ଆସିବ ଯେ ଅଳତା ଲଗାଇ ଦେଇଯିବ । ତର' ହୋଇ ନଖ ତୋଳି ଦେଇ ସେ ଦିନ ଗଲା ବାହାର । ତହିଁ ଆରଦିନ ପୁଅକୁ ଘେନି କରି ଆସିଲା । ପୁଅକୁ ଖିଏଇଥାଏ, ବଡରାଣୀ ବେକରେ ଯେଉଁ ହାର ଅଛି ମୁଁ ତାକୁ ମାଗିକି ଦେଖିବାକୁ, ସେ ମନେ କରିଥିବ ଦେଖିବାକୁ ଦେବ ଯେତେବେଳେ, ସେତେବେଳେ ତୁ କଣ କରିବୁ ହାରକୁ ଛଡେଇ ନେଇଯିବୁ ମୋ ହାତରୁ ଧରିବୁ, ମୁଁ ତୋହ ହାତରୁ ଆଣିଲାବେଳେକୁ କାନ୍ଦିବୁ ଯେ ମୁଁ ଚଳିବି ଥାଉ ପିଲା କାନ୍ଦୁଚି ଆଜି ନେଇ ଯାଉଥାଉ; କାଲି ବୁଝିଲେ ମୁଁ ଦେଇ-ଯିବ । ବଡରାଣୀଙ୍କ ନଖ ତୋଳି ବସିଚି, ବେକକୁ ଅନାଇ ଦେଇ କହିଲା ସାନ୍ତାଣି ଏ ହାର କୋଉଠୁ ଆଣିଥିଲ, ଯାକୁ କୋଉ ଦେଶ-ରଣିଥ ଗଢିଛି ? ଏତ ଆମ ଦେଶ ଗଢାପରି ଦିଶୁ ନାହିଁ । ବଡରାଣୀ କହିଲା ଯାକୁ ଆମ ବାପ ଘରଅଡ ରଣିଥ ଗଢିଛି । ଏ କହିଲା ଦେଖି ସାନ୍ତାଣି ଏ କେମନ୍ତ ? ବଡରାଣୀ ବେକରୁ ବାହାର କରି ଦେଲା । ଏ ଦେଖୁଁ ପୁଅ ଛଡାଇ ନେଇ ଧରିଲା । ଧରିଥାଏ, ଏ ନଖ ତୋଳିସରିଲା, ଅଳତା ଲଗାଇ ଦେଇ ସାରିଲା ପୁଅକୁ କହିଲା ତାଙ୍କ ହାର ଦେ ଆମର ଘରକୁ ଯିବା । ପୁଅ ଆଉ ଛାଡ଼ିଲା ନାହିଁ, କାନ୍ଦିକରି ଗଡ଼ିଲା । ଏ କହିଲା ଦେଉଚି ନାହିଁ, ମୁଁ ଘରକୁ ନେଇ ଯାଉଚି କାଲି ସକାଳୁଁ ହାର ଦେଇଯିବ ବୁଝିଗଲେ । ରାଣୀ କହିଲେ ହଉ ନେ । ଏ ହାର ନେଇ ଆସିଲା ବାହାର, ଆଉ ଫେରାଇ ଦେଲା ନାହିଁ । ସେହି ଦିନଠାରୁ ଡାଳିମ୍ବକୁମର ସର୍ବଦା ଜୀଇଲା ଆଉ ମଲା ନାହିଁ । ରଜାଙ୍କର ମାଳୀ ଯାଏ ସେଠାକୁ ଫୁଲପାଇ ସବୁ ଦିନେ, ଯାହା ନିଃଶବ୍ଦ ହୋଇଥିଲା ସେଠାରେ, ଏବେ ସର୍ବଦା ଗହଳିଚହଳ ଲାଗିବାର ଶୁଣିଲା

ଥିସି ରାଜାଙ୍କୁ କହିଲା ମଣିମା ଗୋଟିଏ କଥା କହିବାକୁ ଭାରି ଭୟ ଲାଗୁଛି, ରାଜା କହିଲେ କଣ କହ । ମାଳୀ କହିଲା ମଣିମା ବନସ୍ତ ଭିତରେ ଯୋଉ ନଅରରେ ଆପଣଙ୍କର ଡାଳିମ୍ବକୁମରକୁ ରଖି ଦେଇ ଆସିଥିଲେ ସେଠାକୁ ମୁଁ ଆଗେ ଫୁଲତୋଳି ଯାଉଥିଲି ଯେ ସବୁଦିନ ନିଃଶବ୍ଦ ଜଣା ଯାଉଥିଲା, ଏବେ କେତେଦିନ ହେଲା ସେଠାରେ ବଡ଼ ଗହଳଚହଳ ଲାଗିଛି । ରାଜା କହିଲେ କାଲି ସେ ଆଡ଼କୁ ବୁଲିଯିବ ଦେଖି ଆସିବା । ସେ ଦିନ ଗଲା ତହିଁ ଆରଦିନ ରାଜା ଗଲେ ସେ ଆଡ଼କୁ ବୁଲି । ଡାଳିମ୍ବକୁମର ଘର କବାଟ ଫିଟାଇ ଦେଖିଲାବେଳକୁ ଡାଳିମ୍ବକୁମର ଖଟ ଉପରେ ବସିଛି । ତା ଭାରିଯା ତଳେ ବସିଛି, ପୁଅ ଡାଳିମ୍ବକୁମର ପାଖେ ବସିଛି । ରାଜା ଦେଖି କାବା ହୋଇଗଲେ, ଡାଳିମ୍ବକୁମରକୁ ସବୁ କଥା ପଚାରିଲେ । ଡାଳିମ୍ବକୁମର ସବୁ କହିଗଲା ବଡ଼ ରାଣୀ ଯାହା କରିଥିଲା ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ରାଜାଙ୍କୁ ସବୁ କହିଲା । ସେ ରଜାଝିଅ ଆଉ ପୁଅକୁ ଦେଖି ରାଜା ପଚାରିଲେ ଏ ସବୁ କିଏ ? ରଜାଝିଅ କହିଲା ମୁଁ ଆପଣଙ୍କର ବୋହୂ, ଆଉ ଯେତେ୨ କଥା ତା ସମ୍ବନ୍ଧରେ ଘଟିଥିଲା ସବୁ କହିଗଲା, ଭଣ୍ଡାରୁଣୀ ବେଶ ହୋଇ ଯେମନ୍ତ ବଡ଼ ରାଣୀଙ୍କଠାରୁ ହାର ଆଣିଥିଲା ସବୁ କହିଗଲା । ରାଜା ପୁଅ ବୋହୂ ନାତି ଦେଖି ବଡ଼ ଖୁସି ହେଲେ ସେମାନଙ୍କୁ ଘରକୁ ନେଇଗଲେ, ଗୋଟାଏ ଗାଡ଼ି ଖୋଳାଇ ବଡ଼ ରାଣୀକି ତହିଁରେ ପକାଇ ଦେଇ ତଳକଣ୍ଟା ଉପରକଣ୍ଟା ଛାଡ଼ି ଦେଲେ । ସାନ ରାଣୀ ପୁଅ ବୋହୂ ନାତି ନେଇ ଘର ଦ୍ୱାର କଲା, ମୁଁ ଗଲାକୁ କଥା କହିଲା ନାହିଁ । ମୋ କଥାଟି ସରିଲା, ଇତ୍ୟାଦି ।






ଗୋଟିଏ ବ୍ରାହ୍ମଣଟିଏ, ଦୁଆର ଓଳାଉଁ୨ କଲରା ମଞ୍ଜିଟିଏ ପାଇଲା। ତାଙ୍କୁ ପଦାରମୂଳେ ଗୋଟିଏ ଗାଡ଼ ଖୋଳି ଲଗାଇ ଦେଲା, କହିଲା କାଲିକି ଯେବେ ଉଠିଥିବୁ ତ ଉଠିଥିବୁ, ନଇଲେ ମାମୁଁ ଘର କଟୁରି ଅଣି ହାଣିବି। ସତକୁ ସତ ତହିଁ ଆରଦିନ ଗୋଟିଏ ଗଜା ହେଲା ସେ ଦିନ ସେ କହିଲା, କାଲିକି ଯେବେ ଗୁଡ଼ା୨ ପତ୍ର ହୋଇଥିବୁ ତ ହୋଇଥିବୁ, ନଇଲେ ମାମୁଁ ଘର କଟୁରିରେ ହାଣିବି। ଯା'ର ସେହିପରି ଗୁଡ଼ାଏ ପତ୍ର ହେଲା। ସବୁଦିନେ ଏହିପରି କହୁ୨ ସେ କଲରାଗଛରେ ଗୋଟିଏ କଷି ଧରିଲା। କଷିଟି ପାକଳ ହେଲା, ଲାଲ ଟହ ଟହ ହୋଇ ପାଚିଲା। ଗୋଟିଏ କାଉ ଆସି କହିଲା ହେ କଲୁରବେଣ୍ଟ ମୁଁ ତତେ ଖାନ୍ତି। କଲୁରବେଣ୍ଟ କହିଲା ତୁ ଥଣ୍ଟ ଧୋଇ ଆ ଯା କି ମତେ ଖାଇବୁ। କାଉ କୂଅ ପାଖକୁ ଗଲା, କହିଲା—

ହେ କୂଅ ଦେ ପାଣି, ଧୁଇବି ଥଣ୍ଟ
ଧାଇଁ ଧାଇଁ ଖାଏଁ କଲୁରବେଣ୍ଟ ।

କୂଅ କହିଲା ଯା କୁମ୍ଭାରଘରକୁ କଳସ ଅଣିବୁ କି ପାଣି କାଢ଼ିବୁ। କାଉ କୁମ୍ଭାର ଘରକୁ ଗଲା କହିଲା—

ହେ କୁମ୍ଭାର କଳସ ଗୋଟି
କାଢ଼ିବି ପାଣି ଧୁଇବି ଥଣ୍ଟ
ଧାଇଁ ଧାଇଁ ଖାଏ କଲୁରବେଣ୍ଟ ।

କୁମ୍ଭାର କହିଲା, ଯା ବିଲରୁ ମାଟି ଅଣିବୁ କି କଳସ ଗଢ଼ିଦେବି। କାଉ ବିଲକୁ ଗଲା, କହିଲା—

ଦେ ବଲ ଦେ ମାଟି
ଗଢ଼ୁ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇଁ ଅଣ୍ଟ
ଧାଇଁ ଧାଇଁ ଖାଏ କଲୁରବେଣ୍ଟ ।

ବଲ କହଲା, ଯା ହରିଣଠାରୁ ଶିଙ୍ଘ ଆଣିବୁ, କି ମାଟି ଖୋଳିବୁ । କାଉ ହରିଣଠାରେ କି ଗଲା, କହଲା—

ଦେ ହରିଣ ଦେ ଶିଙ୍ଘ ଖୋଳଇଁ ମାଟି
ଗଢ଼ୁ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇଁ ଅଣ୍ଟ
ଧାଇଁ ଧାଇଁ ଖାଏ କଲୁରବେଣ୍ଟ ।

ହରିଣ କହଲା ଯା କାଳୀଗାଈଠାରୁ ଦୁଧ ଆଣିବୁ କି; ମୁଁ ଖାଇବି, ତତେ ଶିଙ୍ଘ ଦେବି । କାଉ ଗଲା, କହଲା—

ଦେ କାଳୀଗାଈ ଦେ ଦୁଧ, ଖାଉ ହରିଣ ଦେଉ ଶିଙ୍ଘ
ଖୋଳଇଁ ମାଟି
ଗଢ଼ୁ କୁମ୍ଭାର କଳଶ ଗୋଟି
କାଢ଼ଇ ପାଣି ଧୁଅଇଁ ଅଣ୍ଟ
ଧାଇଁ ଧାଇଁ ଖାଏଁ କଲୁରବେଣ୍ଟ ।

କାଳୀଗାଈ କହଲା ଯା, ହଡ଼ାରୁ ଘାସ ଆଣି ଯା, ମୁଁ ଖାଇବି ଦୁଧ ଦେବି । ଏ ହଡ଼ା ପାଖକୁ ଗଲା, କହଲା—

ଦେ ହଡ଼ା ଦେ ଘାସ, ଖାଉ କାଳୀଗାଈ ଦେଉ ଦୁଧ
ଖାଉ ହରିଣ ଦେଉ ଶିଙ୍ଘ
ଖୋଳଇଁ ମାଟି
ଗଢ଼ୁ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇଁ ଅଣ୍ଟ
ଧାଇଁ ଧାଇଁ ଖାଏଁ କଲୁରବେଣ୍ଟ ।

ହୁଡ କହିଲା ଯା କମାର ଘରୁ ଦାଆ ଆଣିବୁ ତ ଘାସ କାଟିବୁ । କାଉ କମାର ଘରକୁ ଗଲା, କହିଲା—

ଦେ କମାର ଦେ ଦା, କାଟଇଁ ଘାସ
ଖାଉ କାଳୀଗାଈ ଦେଉ ଦୁଧ
ପିଉ ହୁଡଣ ଦେଉ ଶିଙ୍ଘ
•ଖୋଳଇଁ ମାଟି
ଗଢ଼ୁ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇଁ ଥଣ୍ଟ
ଯାଇଁ ଧାଇଁ ଖାଏ କଲୁରବେଣ୍ଟ ।

କମାର କହିଲା ବସ୍ ଦାଆ ଗଢ଼ି ଦେଉଛି । କାଉ ବସିଲା, କମାର ଦାଆଟିଏ ଗଢି ପଚାରିଲା, କେମନ୍ତ ନେବୁ ? କାଉ କହିଲା ମୋ ପିଠିରେ ଦେ, ଏ କହିଲା, ପିଠି ପୋଡ଼ିଯିବ ଆଉ କୋଉଠି ନବୁ ? କାଉ କହିଲା ଥଣ୍ଟରେ ଦେ, ଏ କହିଲା ଥଣ୍ଟ ପୋଡିଯିବ ଆଉ କୋଉଠି ଦେଖା । କାଉ ବେକ ଦେଖାଇ ଦେଲା, କମାର ତତଲା ଦାଆ ଖଣ୍ଡି କାଉ ବେକରେ ଥୋଇଦେଲା । କାଉର କଲୁରବେଣ୍ଟ ଖାଇବା ଲୋଭ ଲାଗିଛି, ଦାଆଖଣ୍ଡି ବେକରେ ନେଇକରି ଗଲା, କେତେଦୂର ଯାଇ ଦାଆ ତାତରେ ପୋଡ଼ି ହୋଇ ମରିଗଲା । ଗୋଟିଏ ବୁଢ଼ା ଚଷାଟିଏ ଗୋଟିଏ ବୁଢ଼ୀ ଚଷୁଣୀଟିଏ ଦୋଟି ଯାଉଥିଲେ, ସେ ବାଟରେ, ବୁଢ଼ୀ ପାଇଲା କାଉଟିକି, ବୁଢ଼ା ପାଇଲା ଦାଆଖଣ୍ଡି । ବିଚାରିଲା କାଉଟିକି ତୃଣ କରି ଖାଇବି, ଘରକୁ ଗଲା, କାଉଟିକି କାଟିଲା କୁଟିଲା ତୃଣ କଲା, ଥୋଇ ଦେଇ ଗାଧୋଇ ଗଲା । ବୁଢ଼ୀ କହିଲା ଦେଖେଁ, ଚାଖେଁ କେମନ୍ତକିସ୍ବା ରଚକାସ ହୋଇଛି ? ଚାଖୁଁ ସବୁତକ୍ ଖାଇଦେଲା । ବଳେଇଟା ମାର ହାଣ୍ଡିରେ ମୁହଁ ଘଷି ଦେଇ ସେଇଠି ପକାଇଦେଲା, ହେଁସଟାଏ ଘୋଡ଼ି ହୋଇ ଶୋଇଲା ଜର, କଲ୍ଲୁଣି ବୋଲି । ବୁଢ଼ା ଗାଧୋଇ ଆସିଲାବେଳକୁ ବୁଢ଼ୀ କମ୍ପୁଛି

କଲ୍ଲଇଟାଏ ମନ୍ତ୍ର ପଢ଼ିଛି, ହାଣ୍ଡିରେ କିଛି ଗୁଣ ନାହିଁ । ବୁଢ଼ା ସବୁ କଥା ବୁଝି ପାରିଲା, ବୁଢ଼ୀକି ଗୁଡ଼ାଏ ଗାଳି ଦେଲା । ବୁଢ଼ୀ ଛାଡ଼ିବାର ଲୋକ ନୁହେଁ, ସ୍ୱଣ ଜଯୁମ ପକାଇ ବିଲେଇର ସବୁ ଦୋଷ ବୋଲି ପ୍ରମାଣ କରିଦେଲା । ବୁଢ଼ା ଆଉ କଣ କରିବ ଲୁନ ହୋଇ ରହିଲା, ଏଣେ କଲୁରିବେଣ୍ଠ କାଉକୁ ଅନାଇ ୨ ଅପମାନରେ ତିନଫାଳ ହୋଇଗଲା । ମୋ କଥାଟି ସରିଲା; ଫୁଲ ଗଛଟି ଇତ୍ୟାଦି ।





## ଅଜଗର ସାପ କଥା ।

ଗୋଟିଏ ରଜାଟିଏ ଯେ ଘର ଦୁଇ ଭାରିଯା, ସାନ ରାଣୀର ଗୋଟିଏ ଝିଅ, ବଡରାଣୀର ଗୋଟିଏ ଝିଅ । ରଜା ସାନରାଣୀକି ବଡ଼ ଦେଖି ପାରନ୍ତି, ବଡ଼ରାଣୀକି ଜମା ଦେଖି ପାରନ୍ତି ନାହିଁ । ବଡ଼ରାଣୀକି ଗୋଟିଏ ଅଲଗା ଘର ତୋଳି ଦେଇଥାନ୍ତି, ତାକୁ ରୋଜ ହାତଟେକିଏ ଚାଉଳ ପଠ଼ ଦେଉଥାନ୍ତି । ତା ଝିଅକୁ ଧାନକ୍ଷେତ ଜଗିବାକୁ ପଠାନ୍ତି, ବାଯୁଣ (୧) ଖାଇଯିବେ ବୋଲି । ଝିଅ ବସି ଯାଏ କହେ ହୋରେ ବାୟା ହୋ । ଅଉ ଦେଶର ରଜା ପୁଅ ଶାପରେ (୨) ଅଜଗର ସାପ ହୋଇ ସେଇ ବନସ୍ତରେ ଥାଏ । ରଜାଝିଅ ଯେତେବେଳେ 'ହୋ ରେ ବାୟା ହୋ' କହି ବାୟା ହୁରୁ-ଡ଼ାଏ, ରଜାପୁଅ ସେତେବେଳେ ଅଜଗର ସାପ ଉଠରେ ଥାଇ କହେ, 'ମାକୁ କହ ଯା ମୁଁ ତମକୁ ବିଭା ହେବି' । ରଜାଝିଅ ଦିବୁଦିନ

(୧) ଏକପ୍ରକାର ଶସ୍ୟନାଶୀ ପକ୍ଷୀ (୨) ଅଭିଶାପ ଦ୍ୱାରା ।

ଏହିପରି ଶୁଣେ । ଦିନକର ବଡ଼ରାଣୀଙ୍କ ଥରେ କହିଲା ବୋଉ, ମୁଁ ନାଚ ହୋରେ ବାପା ହୋ, ଏହା କହି ବାପା ହୁରୁଡ଼େ-ଇଲାବେଳକୁ ବଣଘରରୁ କିଏ ତୋହାଏ କହେ 'ମାକୁ କହ ଯା ମୁଁ ତମକୁ ବଭା ହେବି ।' ବଡ଼ ରାଣୀ ଶିଖାଇଦେଲା, ଆଜ ଯେତେବେଳେ ସେ ଏହା କହିବ ତାକୁ କହିବୁ, 'ତମେ ଯଦି ଆମକୁ ବିଭା ହେବ, କାଲି ସକାଳୁ ଆମ ଦାଣ୍ଡଦୁଆରେ ଅ ହୋ ।' ଏତ ଆଉ ଜାଣେ ନା ଅଜଗର ସାପ ବୋଲି, ମା ଯେମନ୍ତ କହିଥିଲା ସେହିପରି କହିଲା ତାକୁ । ତହିଁ ଆରଦିନ ରାତି ପାଇନାହିଁ ଅଜଗର ସାପ ଆସି ଦାଣ୍ଡଦୁଆରେ ଗର୍ଜ୍ଜନ କରୁଛି । ସମସ୍ତେ କହିଲେ ଏ କଅଣ ଏ କଅଣ ଅଜଗର ସାପଟାଏ କାହିଁକି ଏମନ୍ତ ଦାଣ୍ଡରେ ରହିଛି । ବୁଢ଼ୀ ବଡ଼ରାଣୀ କହିଲା ଏମନ୍ତ ମୋ ଝିଅକୁ ବିଭା ହେବାକୁ ଆସିଛି । ସମସ୍ତେ ବଡ଼ ଦୁଃଖିତ ହେଲେ, କହିଲେ ସେହି ସୁନ୍ଦର ଝିଅକୁ ଅଜଗର ମୁହଁରେ ଦେବ । ସାନରାଣୀ କହିଲା କହିଚିତ ବିଭା କରିବ ନାହିଁ କଣ? ଆଉ କଣ ଅଜଗରକୁ ଫେରାଇ ଦେବ ? ରଜାବି ସେଇଆ କହୁଚେ । ବଡ଼ରାଣୀ ଆଉ ତା ଝିଅ କାନ୍ଦୁଥାନ୍ତି, ବିଭାଘରର ସବୁ ଆୟୋଜନ ହେଲା, ବେଦୀ, ଚୋଳାହେଲା ସବୁଠାରୁ ସବୁ ହେଲା । ପୁରୋହିତ ଆସିଲେ, ଭଣ୍ଡାରୁଣୀ ଆସିଲା, ଅଜଗର ସାପକୁ ଧରିଆଣି ବେଦୀ ଖୁମ୍ବରେ ବାନ୍ଧିଦେଲେ, ପୁରୋହିତ ମନ୍ତ୍ର ପଢ଼ି ବିଭାଘର କରିଦେଲେ । ସବୁ ସରିଲା, ଚତୁର୍ଥୀଦିନ ରାତିରେ ମଧୁ-ଶଯ୍ୟାଘରେ ବିଛଣା କରିଦେଲେ, ଝିଅକୁ ଖଟ ଉପରେ ଶୁଆଇ-ଦେଲେ, ଅଜଗର ସାପକୁ ଖଟ ଗୋଡ଼ରେ ବାନ୍ଧିଦେଲେ, ଆସିଲେ ସମସ୍ତେ ଶୋଇଲେ । ନିଃଶବ୍ଦ ହେଲା ଯୋଉଠୁ, ଏ ରଜାପୁଅ ସାପ-ଖୋଳରୁ ବାହାରିଲା, ବାହାରକୁ ଗଲା । ରଜାଝିଅକୁତ ଥଉ ନିଦ ନ ଥାଏ, ରଜାପୁଅ ବାହାରିଗଲା ଯେମନ୍ତ ଖୋଳକୁ ଛୁଇଁ, ଏ କଅଣ

କଲା ଖୋଳଟିକୁ ନିଆଁ ଲଗାଇ ପୋଡ଼ିଦେଲା । ରଜାପୁଅ ତେଣୁ ଆସି ଦେଖେ ଯେ ଖୋଳ ପୋଡ଼ିଗଲାଣି କହିଲା, କି କଲ? ମୋ ଖୋଳ ପୋଡ଼ି ଦେଲ, ମୋ ଦେହ ପୋଡ଼ୁଛି । ଏ କହିଲା ସେଠାରେ ଚୂଆ ଚନ୍ଦନ ଥୁଆ ହୋଇଛି ବୋଲି ହୋଇପଡ଼, ଦେହ ପୋଡ଼ିବ ନାହିଁ । ରଜାପୁଅ ଚୂଆଚନ୍ଦନରେ ଦେହ ଶୀତଳ କରି ରଜଝିଅ ପାଖରେ ଖଟଉପରେ ବସିଲା, କଥାବାର୍ତ୍ତା ହେଲେ । ରଜଝିଅ ପଚାରିଲା ତମେ କାହିଁକି ଅଜଗର ସାପ ହୋଇଥିଲ ? ରଜାପୁଅ କହିଲା ଆମେ ସବୁ ପିଲା ହୋଇଥିଲୁଁ, ଦିନେ ଖେଳୁ ଖେଳୁ ଗୋଟିଏ ବୁଢ଼ୀ ପାଖେ ଟାପରା ଲଗାଇଲୁଁ, ସେ ମୋତେ ଶାପ ଦେଲା କି ତୁ ଅଜଗର ସାପ ହୋଇ ଯା । ମୁଁ ତାକୁ ଯେତେ ନେହୁରା ହେଲି, କେବେଁ ମୁକ୍ତ କଲା ନାହିଁ, କହିଲା, ପରଦେଶ ରଜଝିଅ ଆସିବ ଧାନ ଜଗି ତୁ ତାକୁ ବିଭାହେବୁ, ସେ ତୋ ଖୋଳକୁ ପୋଡ଼ିଦେଲେ ତୁ ଯାଇଁ ମୁକ୍ତହେବୁ । ଏହିପରି କଥାବାର୍ତ୍ତା ହେଉ୨ ରାତି ପାହା୨ ହେଲା, ନିଦଲାଗିଗଲା ଶୋଇପଡ଼ିଲେ ଦିନ ପ୍ରହରେ ହୋଇଗଲାଣି, ଆଉ କବାଟ ଫିଟିଲା ନାହିଁ, କବାଟ ତାଡ଼ି ଫିଟାଇଲା ବେଳକୁ ଯୁଆଙ୍କ ନିଦ ଭାଙ୍ଗିଗଲା, ରଜାପୁଅ ଲାଜରେ ଦାଣ୍ଡକୁ ପଳାଇଲା, ଝିଅ କବାଟ କଣକୁ ଗଲା ବାହାରି । ସମସ୍ତେ କହିଲେ ଦେଖ ବଡ ରାଣୀଝିଅ ଅଜଗର ସାପ ବିଭା ହୋଇଥିଲା, ତା ଭିତରୁ କେମନ୍ତ ସୁନ୍ଦର ରଜାପୁଅ ବାହାରିଲା । ସମସ୍ତେ ଯୋଉଠୁ ଏପରି କହିଲେ ସାନରାଣୀଝିଅ କହିଲା ମୁଁ ଅଜଗର ସାପ ବିଭା ହେବି । ରଜା ନାହିଁ୨ ହେଉଥାନ୍ତି, ସାନରାଣୀ କହିଲା ନା ମୋ ଝିଅ ଅଜଗରସାପକୁ ବିଭା ହେବ ତ । ରଜା ନାଚାର ହୋଇ ହଁ ଭରିଲେ, ଗଣ୍ଡାଏ କି ପାଞ୍ଚଟା ମଣିଷ ପାହାଡ଼କୁ ଗଲେ, ଗୋଟାଏ ଅଜଗର ସାପ ଧରି ଆଣିଲେ । ସେ ଗର୍ଜନ କରୁଥାଏ ଯେ ଘରଦ୍ୱାର ଭାଙ୍ଗୁଥାଏ । ତାକୁ ବନ୍ଧା ଖମ୍ବରେ ବାନ୍ଧିଦେଲେ, ଲଣ୍ଡ ଭଣ୍ଡ କରି ବିଭା କରିଦେଇ ପୁରୋହିତ ଗଲେ

ବାହାର । ଗଡ଼କି ଖଟ ଉପରେ ବିଛଣା କରି ଆଣି ଝିଅକୁ ଶୁଆଇ-
ଦେଲେ, ଅଜଗରକୁ ଖଟ ଗୋଡ଼ରେ ବାନ୍ଧିଦେଇ ଆସିଲେ । ଧାଈ
ଥିଲ ପାଖ ଘରେ ଶୋଇଥାଏ, ରାତି ଅଧ ହେଲାଣି ଅଜଗର ସେ
ଖଟ ଗୋଡ଼ରୁ ବାହାରିଲା, ଖଟଉପରକୁ ଯାଇ ସାନରାଣୀ ଝିଅକୁ
ଗୋଡ଼ଆଡ଼ୁ ଗିଳିଲା । ଏ ଡାକିଲା ଧାଈ ଗୋଡ଼ ଗଲା, ଧାଈ ଅର-
ଧରୁ କହୁଥାଏ କେଇଁ ଗୋଡ଼ରେ ବଳା ପାହୁଡ଼ ଲଗାଇ ଦେଉ-
ଛନ୍ତି, ପାଟି କରୁଚୁ କାହିଁକି ? ଏ କହିଲା ମୋ ଅଣ୍ଟା ଗଲା, ଧାଈ କହିଲା
କେଉଁ ଚନ୍ଦ୍ରହାର ଲଗାଇ ଦେଉଛନ୍ତି ନା, ଏ କହିଲା ମୋ ହାତ
ଗଲା, ଧାଇ କହିଲା କେଉଁ ଚୁଡ଼ୀ ଖଡ଼ୁ ଲଗାଉଛନ୍ତି, ଏ କହିଲା ମୋ
ବେକ ଗଲା ଧାଈ କହିଲା କେଉଁ ଗୁପସରି ପିନ୍ଧାଇ ଦେଉଛନ୍ତି । ଏହି-
ପରି ସାପ ଗୋଟିକଯାକ ଗିଳିଦେଇ ଖଟଉପରେ ଥୁଳ ହୋଇ
ଶୋଇଲା । ରାତି ପାହିଲା, ଦିନ ଦିପହର ହେଲାଣି, ଆଉ କବାଟ
ଫିଟିଲା ନାହିଁ । ସାନରାଣୀ ଖାଲି ଛଟପଟ ହେଉଥାଏ, କେମନ୍ତେ ବଡ଼-
ରାଣୀ ପରି ଗୋଟିଏ ସୁନ୍ଦର ଜୁଆଁଇ ଦେଖିବ । ବେଳ ଗଡ଼ିଗଲା
ଯୋଉଠୁ କବାଟ ଭାଙ୍ଗି ଘରେ ପଶିଲେ, ଦେଖିଲେ ବେଳକୁ ଝିଅ
ନାହିଁ, ଅଜଗର ସାପ ରହିଚି ଝିଅକୁ ଗିଳିଦେଇ କରି । ଯୋଉଠୁ
ସମସ୍ତେ ଗଦା ହୋଇ ପଡ଼ିଲେ ଦେଖିବାକୁ, ଅଜଗର ସାପ ଗୋଟାଏ
ଗର୍ଜନ ଛାଡ଼ି ସମସ୍ତଙ୍କୁ ମାଡ଼ିଦେଇ ପାହାଡ଼କୁ ପଳାଇଗଲା । ସାନରାଣୀ
କାନ୍ଦି ବୋବାଇ ରହିଲା । ବଡ଼ରାଣୀ ଝିଅ ଜୋଇଁ ଘେନି ସୁଖରେ
ହସିଖେଳି ଘରଦୁଆର କଲା, ମୁଁ ଗଲାରୁ କଥା କହିଲା ନାହିଁ ।
ମୋ କଥା ସରିଲା ଇତ୍ୟାଦି ।



## ନେଉଳଭାଇ କଥା ।

ଗୋଟିଏ ସାଧବ ଥାଏ ସେ ତାର ସାତ ପୁଅ । ସାତବୋହୂ ସତ ଯାଅ ଯାଙ୍କ ଗର୍ଭ ହୋଇଥାନ୍ତି, ଅମ୍ବ ସମୟ ହୋଇଛି, ବରକି ଗଲେ ଛ ଯାଅ ଛଅଟି ଭଲ ଅମ୍ବ ପାଇଲେ, ସବା ସାନ ଯା ଗୋଟିଏ ଖଣ୍ଡିଆ ଅମ୍ବ ପାଇଲା । ଯେଝା ଅମ୍ବ ଯେଝା ଖାଇଲେ, ସାନଯା ଅମ୍ବଟି ନେଉଳ ଖାଇ ଥିଲା; ସାନ ଯା ସେହି ନେଉଳଖଣ୍ଡିଆଟି ଖାଇଲା । ସମସ୍ତଙ୍କ ଦଶ ମାସ ହେଲା, ସମସ୍ତେ କଷ୍ଟ ପାଇଲେ, ପୁଅ ଜନ୍ମ କଲେ, ସାନ ଯା ଗୋଟିଏ ନେଉଳ ଜନ୍ମ କଲା । ସାନ ଯାଟି କାହୁଣୀ ମାହୁଣୀ ହେଉଥାଏ । ସମସ୍ତେ କହିଲେ ଏ କାହିଁକି ନେଉଳ ଜନ୍ମ କଲା ? ଛଅଯା ଯାକ କହିଲେ, ଅମେ ସବୁ ଅମ୍ବଗଛ ମୂଳକୁ ଯାଇ ଥିଲୁଁ, ଅମେ ଛଅଟି ଭଲ ଅମ୍ବ ପାଇ ଖାଇଲୁ, ସେ ଗୋଟିଏ ଖଣ୍ଡିଆ ଅମ୍ବ ପାଇଖାଇଲା । ତାକୁ ନେଉଳ ଖାଇଥିଲା, ଏ ସେହି ନେଉଳ ଜନ୍ମ କଲା । ଷଠୀ ପୂଜା ସାତପଣି ବୁଡ଼ା ସବୁ ସରିଲା । ଗଲା କିଛି ଦିନ, ପୁଅମାନେ ପାଠ ପଢ଼ିଲେ, ଘୋଡ଼ା ଚଢ଼ା ଶିଖିଲେ, ସବୁ କଲେ, ନେଉଳଟି ଅଉ କଣ କରିବ ? ତା ମା ପାଖରେ ଥାଏ । ଛ ଭାଇଯାକ କହିଲେ, ହେ ଅମର ଚାଲ ବିଦେଶ କରିଯିବା, ସବୁ ଦିନେ କଣ ଘରେ ବସିଥିବା ? ମା ମାନଙ୍କୁ କହିଲେ, ଘୋଡ଼ାରେ ଚଢ଼ିଗଲେ । ନେଉଳ କହିଲା ଅଲୋ ମା ମୁଁ ଯାନ୍ତି ଭାଇ ମାନଙ୍କ ସାଙ୍ଗେ ? ମା କହିଲା ତୁ କୋଉଠିକି ଯିବୁ ? ତୋତେ କିଏ ମାଡ଼ି ପକାଇବ କି କଅଣ କରିବ, ତୁ କୋଉଠିକି ଯିବୁ ? ନେଉଳ କହିଲା ନାହିଁ ମା ମୁଁ ଯିବ, ମା କହିଲା ହଉ ଯା, ତୁହି କାହାରି ସଙ୍ଗେ ଝଗଡ଼ା ଲଗାଇବୁ ନାହିଁ । ମା ହଳଦୀ ଟିକିଏ

ତେଲହଳଦୀ ଲଗାଇ ଦେଲା, ଲୁଗା ଖଣ୍ଡେ ଅଣ୍ଟାରେ ଗୁଡ଼ାଇଦେଲା, ଗୁଣ୍ଡଦେଲା । ସେ ଛ ଭାଇଯାକ ଘୋଡ଼ାରେ ଯାଉଥାନ୍ତି, ନେଉଳ ଚଣେ୨ ଯାଉଥାଏ । ବାଟରେ ଗୋଟାଏ ଅମ୍ବଗଛ ଦେଖିଲେ, ତହିଁରେ ଖୁବ୍ ସୁନ୍ଦର ଅମ୍ବ ପାଚିଛି । ଛ ଭାଇଯାକ କହିଲେ ଅହା ! ନେଉଳଭାଇକୁ ସାଙ୍ଗରେ ଅଣି ଥାନ୍ତେଇଁ ତ, ଅମ୍ବ ପାରି ଦେଇଥାନ୍ତା, ଖାଇଥାନ୍ତେଇଁ ସମସ୍ତେ । ନେଉଳ ବଣଭିତରୁ ବାହାରି-ପଡ଼ି କହୁଛି, ଆରେ ଭାଇ ! ମୁଁ ଅଛି ମ ! ଏସବୁ କହିଲେ ଅରେ ନେଉଳ ଭାଇତ ଅଛି ! ଦେ ଗଛରେ ଚଢ଼, ଅମ୍ବ ପାର, ଆମକୁ ଦେ । ନେଉଳ ଗଛରେ ଚଢ଼ିଲା, ସବୁ ପାଚିଲା ଭଲ ଅମ୍ବଯାକ ଖାଉଥାଏ, ୟାଙ୍କପାଇଁ ସବୁ କଞ୍ଚା ଅମ୍ବଯାକ ପକାଉଥାଏ । ଏମାନେ କହୁଥାନ୍ତି ନେଉଳଭାଇ ଦେ ମ ଆମକୁ ଭଲ ଅମ୍ବ ? ଏ ଦେଉ ନ ଥାଏ । ଏ ସବୁ କହିଲେ ହଉ ରହ, ତୁ ତଳକୁ ଆ ତ ତୋହର ରଙ୍ଗ ବୁଝାଯିବ । ନେଉଳ ସବୁ ପଚିଲାଯାକ ଅମ୍ବ ଖାଇଲା, ୟାଙ୍କୁ ଆଉ ଦେଲା ନାହିଁ କି ତଳକୁ ଆସିଲା ନାହିଁ । ଏମାନେ ଠିଆ ହୋଇଥାନ୍ତି, ନେଉଳ ତଳକୁ ଆସିଲେ ତାକୁ ମାରିବେ ବୋଲି । ନେଉଳ ଗଛରେ ବସି୨ ବେଳେ-ବେଳକେ ତଳକୁ ଆସିଲା । ଏମାନେ କଣ କଲେ ତାକୁ ଗୁଡ଼ାଏ ମାରିଲେ, ସେ ଗଛରେ ବାନ୍ଧି ଦେଲେ, ଗଲେ । ନେଉଳ ଓଟାରି ଓଟାରି ହୋଇ ସେଥିରୁ ଫିଟିଲା, ତାଙ୍କର ସାଙ୍ଗେ୨ ଚଣେ୨ ଗଲା । ସେମାନେ ବାଟରେ ଗୋଟାଏ ତାଳଗଛ ଦେଖିଲେ, କହିଲେ ନେଉଳଭାଇ-କର ଗୁଡ଼ ଅଇଲେଣି, ଅଣି ଥାଆନ୍ତେଇଁ, କି ପାଚିଲା ତାଳଖାଇ ଥାନ୍ତେଇଁ । ଏହି କହିଲାକ୍ଷଣି ନେଉଳ ସେହିପରି ବାହାରି ପଡ଼ିଲା କହିଲା ଭାଇ ! ମୁଁ ଅଛି । ନେଉଳ ସେହିପରି ଗଛରେ ଚଢ଼ି ରହି ଯାକ ଖାଉଥାଏ, ମଞ୍ଜିତକ ପୋପାଡୁଥାଏ । ସେମାନେ ସେହିପରି ଚିଡିଲେ, ତଳକୁ ଆସିଲାକ୍ଷଣି ନେଉଳକୁ ଗୁଡ଼ାଏ ବାଡ଼େଇଲେ, ସେ

ଗଛରେ ବାନ୍ଧିଦେଇ ଚାଲିଗଲେ । ଏହିପରି ତାଂରେ ଯୋଉଠି ଗଛ ଦେଖନ୍ତି ସେହିପରି ହୁଅନ୍ତି, ନେଉଳକୁ ଖୋଜନ୍ତି । ନେଉଳ ଯାଏ, ଫେର, ନେଉଳ ସେହିପରି ବଳଦକୁ ଗଛରେ ତାକୁ ବାନ୍ଧି ଦିଅନ୍ତି,ଯାଆନ୍ତି । ଏହିପରି ଯାଇ ୨ ଅରଦେଶ ରଜାଙ୍କ ଘରେ ପହଞ୍ଚିଲେ । ରଜାଘରେ ଏ ଛ ଭାଇଯାକ ରହିଲେ, ନେଉଳଟ ଗୋଟିଏ ରାଣ୍ଡି ବାହ୍ମଣୀ ଘରେ ରହିଲା । ରାଣ୍ଡୀ ବ୍ରାହ୍ମଣୀର କେହି ନ ଥାନ୍ତି, ଖାଲି ଦଶ ବର୍ଷର ପୁଅଟିଏ ଥାଏ । ନେଉଳ କହିଲା ମାଉସି, ମୁଁ ତୋ ଘରେ ଚାକର ରହନ୍ତି ? ରାଣ୍ଡୀ ବାହ୍ମଣୀ କହିଲା ତୁ ଗୋଟାଏ କଣ ଚାକର ହେବୁ ? ନେଉଳ କହିଲା, ମୁଁ ତୋର ସବୁ କାମ କରିବି, ତୁ ମତେ ରଖ । ରାଣ୍ଡୀ ବ୍ରାହ୍ମଣୀ କହିଲା ହଉ ତେବେ ରହ । ନେଉଳ ରହିଲା, ସବୁ କାମ କରୁଥାଏ, ସେ ପୁଅକୁ ଯେତେବେଳେ ବାହାରିଲ ହିଏ, ଏ ସେତେବେଳେ କଣ କରେ ପୁଅ ରାଣ୍ଡିକି କାମୁଡ଼ିଦିଏ ସେ ପୁଅ କାନ୍ଦେ । କାନ୍ଦେ ଯୋଉଠୁ ନେଉଳଭାଇ କହେ କାହିଁକି କାନ୍ଦୁଚୁ ? ପୁଅ କହେ ତୁ ମତେ କାମୁଡ଼ୁଚୁ । ନେଉଳଭାଇ କହେ ମୁଁ ତତେ ଆଉ କାମୁଡ଼ିବି ନାହିଁ, ତୁ କହ ମତେ, ତୋ ମା କେଉଁଠି ଟଙ୍କା ରଖିଚି । ପୁଅ କହିଲା ଚୁଲିମୁଣ୍ଡରେ ପୋତିଚି । ନେଉଳଭାଇ କଣ କରେ ରାତିରେ ତାକୁ ଖୋଳେ, ସେ ଟଙ୍କାତକ ନିଏ । ରାଣ୍ଡୀ ବ୍ରାହ୍ମଣୀର ଗୋଟିଏ ବୁଢ଼ି ମେଣ୍ଢା ଥାଏ ସେ ତାକୁ ଗିଳାଉଥାଏ, କାଳେ ହରି ପକେଇବ ବୋଲି ତାଣ୍ଡିରେ ଖଣ୍ଡେ ଖୋଲ ମାରି ଦେଇଥାଏ । ସେହିପରି ସବୁଦିନ କରେ । ରାଣ୍ଡୀ ବ୍ରାହ୍ମଣୀର ଯେତେ ଟଙ୍କା ଥିଲା, ସବୁ ତା ପୁଅକୁ ପଚାରି ଖୋଳି ସେ ମେଣ୍ଢାକୁ ଗିଳାଇ ଥାଏ । ଯେଉଁ ଦିନ ସେ ଛ ଭାଇ ଘରକୁ ବାହାରିଲେ, ଏ କହିଲା, ମାଉସି । ମୁଁ ଯଉଚି ଘରକୁ, ରାଣ୍ଡୀବ୍ରାହ୍ମଣୀ କହିଲା, ତୁ ଏତେଦିନ ଥିଲୁ ମୋ ଘରେ, କଣ ନେବୁ କହ । ନେଉଳ ଭାଇ କହିଲା ମୁଁ

କିଛି ନେବ ନାହିଁ, ମତେ ଏ ବୁଢ଼ୀ ମେଣ୍ଢାଟି ଦିଅ । ବଣ୍ଡୀ ବ୍ରାହ୍ମଣୀ କହିଲା ହଉ ନେ । ନେଉଳଭାଇ ସେହି ବୁଢ଼ୀ ମେଣ୍ଢା ଉପରେ ବସିଲା, ଗଲା । ଏ ଛ ଭାଇ ଯାଉଥାନ୍ତି ଘୋଡ଼ାରେ ଚଢ଼ି, ନେଉଳ ଯାଉଥାଏ ମେଣ୍ଢାରେ ଚଢ଼ି । ଏ ଛ ଭାଇ କହିଲେ କିରେ ନେଉଳ ଭାଇ ! ଆସିଲୁ କି ? କଣ ଆଣିଚୁ ? ନେଉଳ କହିଲା ମୁଁ ଏହି ବୁଢ଼ୀ ମେଣ୍ଢାଟି ନେଇଚି, ତମେ ସବୁ କଣ ଆଣିଲ ? ଏମାନେ କହିଲେ ଆମେ କିଛି ଆଣିନାହୁଁ । ଏ ଛ ଭାଇ ଘରେ ଆଗରେ ପହଞ୍ଚିଲେ, ନେଉଳର ମା କହିଲା ମୋ ନେଉଳକୁ ଦେଖିଚ ? ଏ ସବୁ ବାଦରେ କହିଲେ, ନାହିଁ ଆମେ ଦେଖି ନାହୁଁ । ଏ ସବୁ ଘରେ ଖାଇପିଇ ଶୋଇଛନ୍ତି, ନେଉଳ ଆସି ଡାକିଲା, ଡାକିଲା ମାଲୋ ! କବାଟ ଫିଟା । ମା ଧଡ଼ପଡ଼କରି କବାଟ ଫିଟାଇ ଦେଲା, ଏ ବୁଢ଼ୀ ମେଣ୍ଢାଟି ନେଇ ଘରେ ପଶିଲା, ମାକୁ କହିଲା କୁଲାଟାଏ ଆଣିବୁଟି । ଏ କୁଲାଟାଏ ଆଣିଲା । ନେଉଳଭାଇ କଣକଲା ମେଣ୍ଢା ଗଣ୍ଡିରୁ ଢୋଲ ଖଣ୍ଡ ଫିଟାଇ ଦେଲା; ମେଣ୍ଢା ସବୁ ଟଙ୍କାତକ ଗାଳି ପକାଇଲା । ନେଉଳ ଭାଇ ଗୋଟିଏ ଟଙ୍କା ଜୁସ ମେଣ୍ଢାକୁ ଫେର୍ ଗିଳାଇ ଦେଲା, ଆଉ ଟଙ୍କା ସବୁ ମାକୁ ଦେଲା, କହିଲା ମାଲୋ ମା, ନେ, ଏହାକୁ ଗାଡ଼ିଆରେ ଧୋଇଆଣି ରଖି ଦେ । ଏ ଧୋଇଧାଇ ରଖି ଦେଲା, ସକାଳୁ ସେ ଛଭାଇଯାକ କହିଲେ, ହଇରେ ନେଉଳଭାଇ ! ତୁ ଏତେ ଟଙ୍କା କେଉଁଠୁ ଆଣିଲୁ ? ନେଉଳ କହିଲା ମୋ ବୁଢ଼ୀ ମେଣ୍ଢା ହଗିଲା । ଏ କହିଲେ ହେ, ଆମକୁ ସେ ମେଣ୍ଢାଟିକ ଦିଅନ୍ତୁ ଟଙ୍କା ନିଅନ୍ତୁ, ନେଉଳଭାଇ କହିଲା, ହଉ ନିଅ, ମତେ ଟଙ୍କା ଦିଅ, ନେଉଳଭାଇ ଟଙ୍କା ଆଣିଲା, ତାଙ୍କୁ ମେଣ୍ଢାଟିକ ଦେଲା । ଏ ନେଇ ସେ ମେଣ୍ଢାକୁ ବାଡେଇଲେ, ବାଡେଇ ୨ ମେଣ୍ଢା ଗୋଟିଏ ଟଙ୍କା ହଗିଲା, ଆଉ ହଗିଲା ନାହିଁ, ମରିଗଲା । ଏ ଛଭାଇ କହିଲେ ଉଠ ରହ ନେଉଳ

ଭାଇ ! ତୋ ଘର ଯେତେବେ ଅମେ ପୋଡ଼ି ନାହୁଁ, ତୁ ଆମକୁ ଠକି ଦେଲୁ ! ନେଉଳଭାଇ ତ ଶୁଣିଥାଏ, ଏ ଘର ପୋଡ଼ିଦେବେ ବୋଲି ସବୁ ଜିନିଷକୁ କୂଅର ପକାଇ ଦେଲା । ତୁନିହୋଇ ମା ପୁଅ ଦୁହେଁ ଲୁଚିକରି ଏଆଡ଼େ ରହିଲେ । ଏ ଛ ଭାଇ କଣ କଲେ ତା ଘରେ ନିଆଁ ଲଗାଇଦେଲେ । ନେଉଳଭାଇ କଣ କରିବ ଲିଭେ-ଇବ ପାରିବ ନାହିଁ, ଘର ପୋଡ଼ି ଯେଉଠୁ ଚୁଡ଼ି ପଡ଼ିଲା ନିଆଁରେ ପାଣି ପକାଇ ଲିଭାଇଲା । ଅଙ୍ଗାରତକ ବାଛିଲା, ବଳଦିଆ ବସ୍ତାଟାଏ ଆଣିଲା, ତାକୁସବୁ ତହିଁରେ ପୂରାଇଲା, ବଳଦଉପରେ ନଦାନ୍ତି, ନେଇ କରି ଗଲା ବିକିବାକୁ । ଯାଉଛି, ତେଣୁ ବଳଦିଆ ସାଜୁଡ଼ା ଅସୁଛନ୍ତି ସର୍କାର ଖଜଣାଟଙ୍କା ନେଇ । ନେଉଳଭାଇକି କହିଲେ, କିରେ କିରେ କଣ ନେଉଚୁକି ? ନେଉଳ କହିଲା ତମେ କଣ ନେଉଛ ? ଏ ସବୁ କହିଲେ ଅମେ ଟଙ୍କାବଳଦ ନେଉଚୁ । ନେଉଳଭାଇ ମିଛରେ କହିଲା ମୁଁ ସେହି ଟଙ୍କାବଳଦ ନେଉଚି । ନେଉଳ କହିଲା ତେମେ କୋଉଠିକି ଯାଉଚ ? ଏ ସବୁ କହିଲେ ଅମେ ସର୍କାରକୁ ଯାଉଚୁ । ରାତି ହେଲା ଯୋଉଠୁ ବଳଦିଆଯାକ କହିଲେ ସମସ୍ତେତ ଏକାଠାକୁ ଯିବା, ଏଇଠି ଏକାଠେଇଁ ସମସ୍ତେ ରହିଯିବା । ନେଉଳଭାଇ କହିଲା ହଉ ତେବେ ଭଲହେବ । ସମସ୍ତେ ରହିଲେ, ସେପେଇବାସ କଲେ, ଖାଇଲେ ପିଇଲେ ଶୋଇଲେ । ଏ ସବୁଙ୍କୁ ଯେଉଠୁ ନିଦ ଲାଗିଗଲା ନେଉଳଭାଇ ଉଠିଲା, ଯାଙ୍କୁ ସବୁ ଡ଼ାକେ ୨ ମାରିଦେଲା । ଏ ସବୁ କହିଲେ ଅମେ ଅଇଛୁକା ଯିବୁ ନାହିଁ, ତୁ ନଇଲେ ଆଗରେ ବାହାରି ଯା । ନେଉଳ କଣ କଲା ଅଙ୍ଗାର ପଟକ ସେମାନଙ୍କର ଗୋଟାଏ ବଳଦ ଉପରେ ଲଦିଦେଲା, ଟଙ୍କା ପଟକ ତା ବଳଦଉପରେ ଲଦିଲା, ଘେନି କରି ବାହାରି ଆସିଲା । ଘରକୁ ଅସି କବାଟରେ ମାରିଲା, ମା କବାଟ ଫିଟାଇଲା, ମା ପୁଅ ଦୁହେଁ ଟଙ୍କା ପଟକୁ ଧରାଧରି କରି ନେଇ

ଥୋଇଦେଲେ । ନେଉଳଭାଇ ଘରେ ଶୋଇଥାଏ, ଏଣେ ଏ ବଳଦଯାକ ଉଠିଲେ, ପଠ ବଳଦଉପରେ ନଦଲାବେଳକୁ ଅଙ୍ଗାର-ପଠ ଉଣ୍ଡାସ ଲାଗିଲା । ଏମାନେ କହିଲେ ଆରେ ଆରେ ଆମକୁ ନେଉଳ ଠକ ଦେଇ ଚଳା । ବାଡ଼େଇ କଣ୍ଟ ହେଲେ ରହିଲେ, ଅଉ ନେଉଳକୁ ପାଇଲେ ନାହିଁ । ସତ ପାହିଲା, ଏ ଛ ଭାଇ ଉଠଲେ, କହିଲେ, କିରେ ନେଉଳଭାଇ । କଣ ଅଣିଲୁ ? ନେଉଳଭାଇ କହିଲା ଅଙ୍ଗାର ।ଠକୁ ଠଙ୍କା ପଠେ ଅଣିଲି । ଏ ଛ ଭାଇ କହିଲେ ଆମ ଘର ଅମେ ପୋଡ଼ି ଦେବା କ ଠଙ୍କା ଅଣବା, ନେଉଳଭାଇ କହିଲା ପୋଡ଼, ମୁଁ କଣ ତମକୁ ନାହିଁ କରୁଚ ? ଏମାନେ ନଜ ଘର ସବୁ ପୋଡ଼ଦେଲେ, ଅଙ୍ଗାର ବାଛୁ ଛ ପଠ ସଲେଇ କଲେ; ବଳଦ ଉପରେ ଲଦିଲେ, ନେଇକର ଗଲେ । ନେଉଳଭାଇକ ପଚାରଲେ ନେଉଳଭାଇ, ତୁ କଣ ଡାକକର ବକ୍ରୀ କଲୁ ? ନେଉଳଭାଇ ମିଛରେ କହିଲା, ମୁଁ କହାଳ ଅଙ୍ଗାର ପଠ କିଏ ନେବ ରେ, ଠଙ୍କା ପ: କିଏ ଦେବ ରେ ? ଏମାନେ ନେଇ ସେଇଥ ଡାକଲେ । କିଏ କାହିଁକି ଅଙ୍ଗାର ଗୁଡ଼ାକ ନେବ । ଧଥଣ, ଅଣାକର କଏ କେମନ୍ତ କିଣିଲା, ଅଉ କେହି ନେଲେ ନାହିଁ । ଏମାନେ ଗୃହ ଛ ଦନ ରହି ଫେର ଅସିଲେ । ନେଉଳଭାଇ କୋଠା ତୋଳି ଦେଉଛ ତୋଳି ବସିଛ । ଏ ଛ ଭାଇଯାକ କହିଲେ ରହ ରହ, ଅଜ ନେଉଳଭାଇକି ପଠରେ ସିଲେଇ କର ପାଣିକି ପକେଇ-ଦେବା ଯେ ଏକାନଠକେ ସିବ । ନେଉଳକୁ ଡାକ ନେଲେ, ଗୋଟାଏ ପଠ ଅଣିଲେ, କହିଲେ ଏଟିରେ ପଶିଲୁ, ଦେଖିବୁ କେତେ ଧାନ ସମେଇବ ? ନେଉଳ ପଶିଲା, ଏମାନେ କଣ କଲେ, ନେଉଳଭାଇ ଯୋଉଠୁ ପଶିଗଲା, ପଠକୁ ସିଲେଇ କରଦେଲେ, ନଈକି ଫୋପାଡ଼ ଦେଲେ । ସେଠାରେ ଗୋଟିଏ ଗଉଡ଼ ଗାଈ ଜଗଥାଏ, ତାକୁ

ଡାକି ନେଉଳଭାଇ କହିଲା, ହେ ମୋତେ ମୋ ଭାଇମାନେ ବଳି କରିବାକୁ ନେଇ ଯାଉଛନ୍ତି, ମୁଁ ଅଇଠୁକା ବଳି ହେବନାହିଁ । ତୁ ମତେ ଏଥିରୁ ବାହାର କରି ଦେ, ତୁ ପଶ ଯେ ତୁ ବଳି ହେବୁ । ଗଉଡ ଅନ୍ତୁ ଏତେ କଥା ଜାଣିଚ, ଗଉଡ଼ ବାହାର କରିଦେଲା ନେଉଳଭାଇକି, ସେଥିରେ ନିଜେ ପଶିଲା । ନେଉଳ କଣ କଲା ଗଉଡ଼କୁ ନଈକି ଫୋପାଡ଼ି ଦେଲା, ତା'ର ଗାଈ ପଲକ ଘିଚିଲା, ଘରକୁ ଆସିଲା । ଏ ଛଅ ଭାଇଯାକ ଦେଖି କାବା ହୋଇଗଲେ, ପଚାରିଲେ, ହଇରେ ତୁ ଏ ଗାଈ କୋଉଠୁ ଆଣିଲୁ ? ନେଉଳଭାଇ କହିଲା, ତୁମେମାନେ ମତେ ପାଖରେ ପକାଇଦେଇ ଆସିଲ, ବହୁତ ଦୂରରେ ପକାଇ ଦେଇଥିଲେ ବେଶି ଗାଈ ଆଣିଥାନ୍ତି । ଏମାନେ କହିଲେ ହେ ନେଉଳଭାଇ ! ଆମକୁ ତୁ ପଠରେ ପୂରାଇ ନଈକି ଫୋପାଡ଼ି ଦେଉନ୍ତୁ ; ନେଉଳଭାଇ କହିଲା ହଉ ପଶ, ମୁଁ କଣ ମନା କରୁଚି ? ଏ ଛଅ ଭାଇ ଛ'ଟା ପଠରେ ପଶିଲେ, ନେଉଳଭାଇ ପଠମୁହ ସିଲେଇ କରିଦେଲା, ନଈରେ ଖୁବ୍ ଦୂରରେ ଫୋପାଡ଼ି ଦେଲା । ଆଉ ଏ ଛ ମା ଯାକଙ୍କୁ ନେଇ ଘରେ ରହିଲା, ବାହା ହେଲା, ଘର ଦୁଆର କଲା ଖୁବ୍ ସୁଖରେ ରହିଲା, ମୁଁ ଟଲାରୁ କଥା ନ କହିଲା । ମୋ କଥାଟି ସରିଲା ଇତ୍ୟାଦି ।



# ଅନନ୍ତା କଥା ।

ଗୋଟିଏ ଚଷା ଘରେ ମା, ବାପ, ପୁଅ ଝିଅ ଗୃହସ୍ଥ ଲୋକ ଥାନ୍ତି । ଝିଅଟି ବାହା ହୋଇଗଲା ଗୋଟିଏ ଖୁବ୍ ଧନବନ୍ତ ଘରେ, ବାପଟି ମରି ଗଲା । ଏ ମା ପୁଅ ଦୁହେଁ ଭାରି କଷ୍ଟରେ ଥାନ୍ତି, ଗୋଳନା ଗୃହ ଦେଇ ମୂଲ ଖଟି ଚଳନ୍ତି । ପୁଅଟି ନା ଅନନ୍ତା । ଭଉଣୀଘରେ ବାହା-ଘର ହେଉଥିଲା, ଅନନ୍ତା କହିଲା, ମା ! ନାନୀଘରେ ବାହାଘର ହେଉଛି, ମୁଁ ଯାନ୍ତି ଦେଖିବାକୁ ? ମା କହିଲା ହେଉ ଯା । ଅନନ୍ତା ଗଲା ଭଉଣୀ ଘରକୁ, ଯାଇ ସନ୍ଧ୍ୟାବେଳେ ପହଞ୍ଚିଲା । ଭଣେଇ ଦେଖିଲା, କହିଲା ଅନନ୍ତ ଆସିଛ କି ? ହଉ ତେବେ ଏ ଖଲିପତ୍ର ଦକ୍ଷିଣ ସିଇଁ ଦିଅ, ଏହା କହି ହାତବାଉଁ ପତର ଦେଇଗଲା ଖଲି ସିଇଁବାକୁ । ଅନନ୍ତା ଖଲିପତ୍ର ସିଉଁ ସିଉଁ ରାତି ପାହିଆସୁଥା ହେଲା, ସମସ୍ତେ ଖାଇପିଇ ଶୋଇ-ଲେଣି, ଭଉଣୀର ମନେ ପଡ଼ିଲା ଅନନ୍ତାତ ଆସିଛି ଖାଇ ନାହିଁ ! ଏହା କହି ହାଣ୍ଡିଶାଳରେ ହାଣ୍ଡି ଦେଖିଲାବେଳକୁ ହାଣ୍ଡିରେ କିଛି ନାହିଁ, ପେଜମିଶା ହୋଇ ଭାତ ଗଣ୍ଡିଏ ରହିଛି । ଡାକିଲା, ଅନନ୍ତା ! ପେଜ ପିଇବୁ ? ଅନନ୍ତା କହିଲା ନାହିଁ ନାନି, କାଲି ସକାଳଯାଏ, ରାତିପାହି-ଗଲାଣି କାଲି ସକାଳେ ଖାଇବି । ଭଉଣୀ ଫେରିଗଲା ଘରକୁ । କେତେ ସମୟ ପରେ ରାତି ପାହିଲା । ଭଣେଇ ଘରୁ ଉଠି ଆସି ଦେଖେ ଯେ ଅନନ୍ତା ପିଣ୍ଡାରେ ବସିଛି, କହିଲା ଅନନ୍ତ ! ଏ ଦାଆଖଣ୍ଡି ନେବଟି, ଘୋଡ଼ାପାଇଁ ଘାସ କେତେଟିଏ ଅଣିବ, ଅନନ୍ତା ଦାଆକୁ ଅଣିଲା, ଆସିଲା । ମନେ ମନେ ଭାବିଲା, ମୁ ପରା ଦୁଃଖୀଟିଏ ବୋଲି ମତେ ଏମନ୍ତ କହୁଛନ୍ତି

ବାଡ଼ରେ ଦାଆକୁ ଫୋପାଡ଼ି ଦେଲା, ଆପଣା ଘରକୁ ଫେରି ଆସିଲା । ଆସନ୍ତେ, ବାଡ଼ରେ ଗୋଟାଏ ମଲା ନାଗସାପ ଦେଖିଲା, କହିଲା ବଞ୍ଚିଛୁ ବୋଲି ସିନା ଏତେ ଅପମାନ, ଯାଉଛି ଏ ମଲା ସାପକୁ ନେଇ ସିଝେଇ କରି ଖାଇବି ସେ ମରିବି । ଏହା କହି ସାପଟି ନେଇ ଘରକୁ ଆସିଲା, ମାକୁ କହିଲା, ମା ! ଏହାକୁ ସିଝା, ଖାଇବା । ମା ସାପକୁ କାଟିକୁଟି ରାନ୍ଧି ରଖିଲା । ଅନନ୍ତା ଗାଧୋଇ ଆସିଲା, ମା ଗଲା ଅନନ୍ତାକୁ ଖାଇବାକୁ ଦେବାକୁ । ହାଣ୍ଡି ଦେଖିଲାବେଳକୁ ସାପସିଝା ନାହିଁ । ସୁନା ମୁଣ୍ଡା ମୁଣ୍ଡା ହୋଇ ହାଣ୍ଡିରେ ରହିଛି । ମା ଦେଖି ବାବା ହୋଇ ଗଲା, ପୁଅକୁ ଦେଖାଇଲା । ପୁଅ କହିଲା ମା ଆମ କପାଳ ଫିଟିଲା । ମା ସବୁ ସୁନାଯାକ ରଖିଦେଲା । ଅନନ୍ତା ସେଥିରୁ ଖଣ୍ଡେ ନେଇ ଗଲା, ହାଟରେ ବିକିକରି ସବୁ ସରଞ୍ଜାମ ଆଣିଲା । ମା ପୁଅ ଦିହେଁ ଖାଇ ପିଇ ସୁଖରେ ରହିଲେ । ଅନନ୍ତା ଖୁବ୍ ଘରଦ୍ୱାର କଲା । ଗୋଟାଏ ହାତୀ କିଣିଲା, ଭଉଣୀପାଇଁ ସାତେଜ ଅଳଙ୍କାର କଲା, ହଟା ସୁନାମୁଦି ରୁପାମୁଦି ତା ପାଇଁ ଗଢ଼ାଇଲା । ଯୋଡ଼ାଏ ଘଣ୍ଟି ଗଢ଼ାଇଲା, ଗୋଟାଏ ଘଣ୍ଟି କହୁଥାଏ, 'ଅନନ୍ତା ପେଜ ପିଇବୁ ଅ' ଆଉ ଗୋଟାଏ କହେ 'ନାହିଁ ନାହିଁ କାଲି ସକାଳ ଯାଏ' । ଏହାପରେ ସବୁକରି ସାରିଲା । ମାକୁ କହିଲା ମା ମୁଁ ଯାଉଛି ନାନୀଘରକୁ । ଅନନ୍ତା ହାତୀ ଉପରେ ବସି, ଅଳଙ୍କାରପେଡ଼ି ସାଙ୍ଗରେ ନେଲା, ସୁନାମୁଦି ରୁପା ମୁଦି ନେଲା, ଘଣ୍ଟି ହଟା ନେଲା, ଗଲା ଭଉଣୀ ଘରକୁ । ଗାଁ ମୁଣ୍ଡରେ ହେଲାରୁ ସେ ଘଣ୍ଟି ଯୋଡ଼ିକ ହାତୀବେକରେ ପକାଇଦେଲା । ଗୋଟାଏ ଘଣ୍ଟି କହୁଥାଏ 'ଅନନ୍ତା ପେଜ ପିଇବୁ ଅ' ଆଉ ଗୋଟାଏ କହୁଥାଏ 'ନାହିଁ ନାହିଁ କାଲି ସକାଳ ଯାଏ' ଏହିପରି ସେ ଘଣ୍ଟି ଯୋଡ଼ାକ ବାଜୁଥାଏ ।।

ଗାଁ ଲୋକେ ଶୁଣି କହିଲେ, ଭଉଣୀ ଭାଇକି ଏହା କହିଥିଲା ବୋଲି ପଛ ଭାଇ ଏପରି ଘଣ୍ଟି ବଜାଇ ଆସୁଛି । ଅନନ୍ତ ଭଉଣୀ ଦୁଆରେ

ପହଞ୍ଚିଲା ବେଳକୁ କିଏ ପାଣିଚୋଟା ଧରି ଛିଡ଼ା ହୋଇଛି, କିଏ ହାତଧରି ନେବାକୁ ବସିଛି, କିଏ ବନ୍ଦଣା କରି ଦେଉଛି, ଏହିପରି ସବୁ ହାଜର ଅଛନ୍ତି । ଗୋଡ଼ ଧୋଇ ଘର ଭିତରକୁ ଗଲାବେଳକୁ ଘରେ ଭାତ ବଢ଼ା ହୋଇଛି, ଭଉଣୀ ଠିଆ ହୋଇଛି । ଅନନ୍ତା ଅଳ-ଙ୍କାର ଯେଉଁଠି ଭଉଣୀ ଆଗରେ ଥୋଇଦେଲା, ତା ପାଖକୁ ଯାଇ ବସିଲା, କହିଲା ଆଉଥରେ ଆସିଥିଲି ଯେ ଭଣୋଇ କହିଲା ଖଲପଡ଼ି ସିଇଁ ! ଭଉଣୀ କହିଲା ଟପଜ ପିଇବୁ ଅ ! ଏଥର ସିନା ଧନଦରବ ଆଣିଛି ବୋଲି ଏତେ ଆଦର, ଏହାକହି ସୁନାମୁଦି ରୂପାମୁଦିକି ଭାତରେ ପୋତିଦେଲା କହିଲା 'ଭୁଞ୍ଜ ସୁନା ଭୁଞ୍ଜ ରୂପା' ମୁଁ ଖାଇବି ନାହିଁ । ଏହା କହି ଥାଳି ପାଖରୁ ଉଠି ଆସିଲା, ଭଉଣୀକି କହିଲା ତୁ ଏ ଅଡ଼େ ମୁଁ ସେ ଅଡ଼େ; ଏହା କହି ହାତୀରେ ଚଢ଼ି ବାହାରି ଆସିଲା, ଘରେ ପହଞ୍ଚି ସୁଖରେ ଘରଦୁଆର କଲା, ଭଉଣୀଙ୍କ ଆଉ ପଚାରିଲା ନାହିଁ, ମୁଁ ଗଲାକୁ ମଟର କଥା କହିଲା ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।



## କଞ୍ଚନବତୀ କଥା

ଗୋଟିଏ ସାଧବଟିଏ ତାର ସାତ ପୁଅ ସାତ ବୋହୂ, କଞ୍ଚନବତୀ ବୋଲି ଗୋଟିଏ ଝିଅ । ଦିନକର ଭାଇଯାକ ମା'କୁ କହିଲେ, ଆଜି କଞ୍ଚନବତୀ ଶାଗ ଖରଡ଼ୁ । ମା କହିଲା ହଉ, କଞ୍ଚନବତୀକି ଶାଗ ଗୁରିଏ ଦେଲା. କହିଲା ଯା ଖରଡ଼ିବୁ, ଭାଇମାନେ କହିଛନ୍ତି ଖାଇ-ବାକୁ । ଏ ଗଲା ଶାଗ ଧୋଇ ଆଣି ବାଛି କାଟିଲା, ସୁନ୍ଦର କରି ଖରଡ଼ିଲା ।

ସବୁ ଭାଇମାନଙ୍କୁ, ମାକୁ, ବାପକୁ ଖାଇବାକୁ ଦେଲା, ସମସ୍ତେ କହିଲେ ଅଳ୍ପ ଶାଗ ଭଲ ହୋଇଛି, ସାନବୋହୂ କାହିଁକି ଏମନ୍ତ ଅବର୍ଜ୍ୟା କରି ଫେରଉଛି? ଏହାପରେ ସାନବୋହୂକୁ ସମସ୍ତେ ନିନ୍ଦା କଲେ । ସାନବୋହୂ ଆଉ କିଛି କହିଲା ନାହିଁ, ରାତିରେ ଯେତେବେଳେ ତାର ସ୍ୱାମୀ ସଙ୍ଗେ ଦେଖା ହେଲା, ଖାଲି କାନ୍ଦିଲା । ସ୍ୱାମୀ ଯେତେ ପଚାରୁଥାଏ କିଛି କହୁ ନ ଥାଏ, କେତେବେଳ ପରେ କହିଲା, ତେମେ ସତ୍ୟ କର ମୁଁ କହିବ । ସେ ସତ୍ୟ କଲା, ସେଉଠୁ ତା ଭାରିଜା କହିଲା—କାଞ୍ଚନବତୀ ଯୋଗୁଁ ମୋର ଆଜି ଏତେ ନିନ୍ଦା, ସେ ଯେବେ ଆଜି ଏ ଘରୁ ଯିବ ମୁଁ ତ ଭାତ ଖାଇବି, ନଇଲେ କେବେହେଁ ଭାତ ଖାଇବି ନାହିଁ । ତାର ବର କହିଲା ହଉ, କାଲି ତାକୁ ନେଇ ମାରିପକାଇବି । ତହିଁ ଆରଦିନ ସକାଳୁ ସାନଭାଇ କଣ କଲା ଦାଣ୍ଡଦୁଆରୁ ଆସିଲା, କହିଲା ବୋଉ, କାଞ୍ଚନବତୀର ଶଶୁର କହୁଛି କାଞ୍ଚନବତୀକୁ ପଠାଇ ଦେବାକୁ । ମା ଭାରି ସଞ୍ଜଳ କଲା, ସାନ ଭାଇ ସାଙ୍ଗରେ ଝିଅକୁ ଶାଶୁଘରକୁ ପଠାଇଦେଲା । କାଞ୍ଚନବତୀ ଆଉ ତା ଭାଇ ଯାଉଛନ୍ତି, ବାଟରେ ଗୋଟିଏ ଗାଁ ପାଖରେ କାଞ୍ଚନବତୀକୁ ତା ଭାଇ କହିଲା, ତୁ ଏଇଠି ବସିଥା, ମୁଁ ଗାଁ ଭିତରୁ ପାଣି ପିଇ ଆସେ । ଏହା କହିଲା, ଗଲା ଯେ ସେ ଆଉ କେତେବେଳଯାଏ ରହିଲା । ଯେ ଯାଉଥାଏ ବାଟରେ କାଞ୍ଚନବତୀ ତାକୁ ପଚାରୁଥାଏ ମୋ ଭାଇକି ଦେଖିଛକି ? ସମସ୍ତେ ନାହିଁ କରୁଥାନ୍ତି, କେତେବେଳେକେ ତାର ଭାଇ ତେଣୁ ଛୋଟାଏ ପଟାଣର ପୋଷାକ ପିନ୍ଧି ଖଣ୍ଡା ପଟେ ହାତରେ ଧରି ଟିକାଟାଏ ଖାଇଖାଇକା ଆସିଲା, କାଞ୍ଚନବତୀକି ହାଣି ପକାଇଲା । କାଞ୍ଚନବତୀ ସେଇଠି ଗୋଟିଏ ଅଛି ସୁନ୍ଦର କାଞ୍ଚନଗଛ ହୋଇ ରହିଲା । ତହିଁର କେତେଦିନକେ କାଞ୍ଚନବତୀର ଶ୍ୱଶୁର କାଞ୍ଚନବତୀକି ନେବାକୁ ଆସି ବାଟରେ ଯେଉଁ କାଞ୍ଚନଗଛମାନେ ବସିଲା । ଶ୍ୱଶୁର ସାଙ୍ଗେ

ଯେଉଁ ବାଉକ ଥିଲା ସେ ଗଛରେ କି ସୁନ୍ଦର ଫୁଲଗୁଡ଼ିଏ ଫୁଟିଛି ଦେଖି ଫୁଲଟିଏ ତୋଳିବାକୁ ଯେମନ୍ତ ହାତ ବଢ଼ାଇଛି, ସେ କଞ୍ଚନଗଛରେ କଞ୍ଚନବତୀ କହିଲା, ଥିର ୨ କରି ତୋଳ ଦେ ବାଉକ, ଗଛରୁ ପତର ଝଡ଼ୁଛି, ମୋର ସାନ ଭାଇ ଖଣ୍ଡାରେ ହାଣିଛି ତହିଁକି ମୋ ଦେହ ଥରୁଛି । ଗଛଭିତରୁ ଏମନ୍ତ ଶବଦ ବାହାରୁବା ଶୁଣି ସମସ୍ତେ କାବା ହୋଇଗଲେ ! କଞ୍ଚନବତୀ ଶଶୁର ଫେର ଖଡ଼ିବାପାଇଁ ଗଛକୁ ଫୁଲ ତୋଳିବାକୁ ହାତ ବଢ଼ାଇଲା; ସେ ଗଛରୁ ସେହିପରି ଶବଦ ହେଲା- ଥିର ୨ କରି ତୋଳ ଦେ ଶଶୁର ଗଛରୁ ପତର ଝଡ଼ୁଅଛି; ମୋର ସାନଭାଇ ଖଣ୍ଡାରେ ହାଣିଛି ତହିଁକି ମୋ ଦେହ ଥରୁଛି । ଶଶୁର ମନରେ କେତେ ଦୋଦୋପାଞ୍ଚ କଲା, ଗଲା ତା ଘରକୁ ବୋହୂ ଆଣି-ବାକୁ । ଶଶୁର ଆସି କହିଲା ମୋ ବୋହୂକୁ ପଠାଅ, କଞ୍ଚନବତୀର ବାପ ମା ଭାଇମାନେ ସମସ୍ତେ କହିଲେ ଆମେ ଝିଅକୁ ତ କୋଉଦିନୁ ଛାଡ଼ି ଆସିଲୁଣି, ତେମେ ଆଜି ବୋହୂପାଇଁ କଣ ଆସିଛ ? ଶଶୁର କହିଲା ହଉ ତେବେ ଏ ଗଛ ମୂଳକୁ ଆସିଲ, ଏ ଗଛ କଣ କହୁଛି ? ସମସ୍ତେ ଗଲେ, ଛ ଭାଇ, ଛ ଭାଉଜ, ବାପ, ମା, ସାନ ଭାଇ, ସାନ ଭାଉଜ ଗଲେ ନାହିଁ । ଆଗେ ବାପ ଗଲା ଫୁଲ ତୋଳିବାକୁ, ଗଛ କହିଲା, ଥିର ୨ କରି ତୋଳ ଦେ ବାପା, ଗଛରୁ ପତର ଝଡ଼ୁଛି; ତମ ସାନ ପୁଅ ଖଣ୍ଡାରେ ହାଣିଛି ତହିଁକି ମୋ ଦେହ ଥରୁଛି । ମା, ଆଉ ୬ ଭାଇମାନେ ସେହିପରି ଗଲେ, ସେମାନଙ୍କୁ ବି ସେହିପରି କହିଲା । ଜାଣି ପାରିଲେ ଯେ ସାନ ଭାଇ କଞ୍ଚନବତୀକୁ ସେଠାରେ ମାରି ପକାଇଛି । ମା, ବାପ, ଶଶୁର, ଭାଇ, ଭାଉଜ ସମସ୍ତେ ବସି ସେଠାରେ କାନ୍ଦିଲେ । ରାତି ଯାଏ କାନ୍ଦୁଥାନ୍ତି, ରାତି ଅଧହେଲାଣି, ଈଶ୍ୱର ପାର୍ବତୀ ଉଡ଼ି ଯାଉଛନ୍ତି, ଏମାନଙ୍କ କାନ୍ଦଣା ଶୁଣି ସେଠାକୁ ଆସିଲେ । ଏମାନଙ୍କୁ ପଚାରିଲେ, ତେମେ ସବୁ କିଏ ? ଭୂତ ନା ପ୍ରେତ ? କାହିଁକି କାନ୍ଦୁଛ ? ଏମାନେ କହିଲେ, ଆମ୍ଭେମାନେ କେହି ନୋହୁ

ଏହି ମଣ୍ଡର ଲୋକ, ଆମର ଗୋଟିଏ ହିଁ ଅମର ଗଛ ହେଉଛି, ଆମେ ତାରପାଇଁ କାନ୍ଦୁଛୁଁ । ଈଶ୍ୱର କହିଲେ ହଉ, ତେଣିକି ମୁହଁ ବୁଲା- ଏମାନେ ସେ ଅଡ଼ାକୁ ମୁହଁ କରି ବସିଲେ । ଈଶ୍ୱର କଣକଲେ, ଫୁଲ ପାଣି କରି ଜନମୁଠା ଛିଞ୍ଚିଦେଲେ ଯେ କାଞ୍ଚନବତୀ ଜୀଇ ଉଠିଲା । ଶ୍ୱଶୁର ବୋହୂକୁ ଘରକୁ ନେଇଗଲା । ଭାଇ, ଭାଉଜ, ମା, ବାପ ଘରକୁ ଆସିଲେ, ଗୋଟାଏ ଖଣି ଖୋଳିଲେ, ସାନ ପୁଅ, ସାନ ବୋହୂକୁ ସେଥିରେ ପେଲିଦେଲେ; ତଳକଣ୍ଟା ଉପରକଣ୍ଟା ପୋତିଦେଲେ । ନିଶ୍ଚିନ୍ତରେ ଘରଦୁଆର କଲେ । ମୁଁ ଗଲାକୁ କଥା ନ କହିଲେ । ମୋ କଥାଟି ସରିଲା ଇତ୍ୟାଦି ।



## ଟକ୍ମକ୍ ପାଣି ଚଳନ୍ତି ବାଜା କଥା ।

ଗୋଟିଏ ରଜାଟିଏ, ତାର ସାତ ଭାରିଯା । ରଜା ଦିନକର ପାରିଧିକି ଯାଉଥିଲେ, ପାତ୍ରମନ୍ତ୍ରୀ ସମସ୍ତିଙ୍କି ସାଙ୍ଗରେ ନେଇ ଯାଇଥିଲେ । ଅସୁରୁଣୀ ସାତ ଭଉଣୀ ଯେ, ସାତ ଭଉଣୀଯାକ କଳକଳିହୁଁ କରି ସବା ସାନ ଭଉଣୀକି ତଡ଼ି ଦେଇଥିଲେ ଯେ ସେ ଆସି ଗୋଟାଏ ଗଛରେ ଛିଡ଼ି କାନ୍ଦୁଥିଲା ବନସ୍ତରେ, ରଜାଙ୍କ ଉପରେ ଲୁହ ପଡ଼ିଲା । ରଜା କହିଲେ ଗୁଣିଆଣିଆକୁ, ଗୁଣିବୃଢ଼ି, ଆଜ ବରଷା କି ଧମ ବରଷା ? ଗୁଣିଣିଆ ଗୁଣିଲା, କହିଲା ଆପଣଙ୍କ ବରଷ ହେବ । ରଜା କହିଲେ, ମନ୍ତ୍ରୀଙ୍କି ଯାଅ, ହାତ ଧରିକରି ଆଣ । ମନ୍ତ୍ରୀ ଗଲେ, ହାତଧରିକରି ଆଣିଲେ, ରଜାଙ୍କ ପାଖରେ ଠିଆ କରିଦେଲେ । ରଜା ଅସୁରୁଣୀ କି ପଚାରିଲେ ତୁ କିଏ ? ଏଠାକୁ କାହିଁକି ଆସିଚୁ ? ଅସୁରୁଣୀ ରଜାଙ୍କୁ ଦେଖି ଖୁବ୍

ସୁନ୍ଦର ମୋହିନୀବେଶ ଧରିଲା ରାଜା ଯେପରି ଭୁଲିଯିବେ, ହସରେ କହିଲା ମୁଁ ଅରଦେଶ ରାଜାର ଝିଅ, ବାଟ ନ ପାଇ ଏଥାକୁ ଆସିଲି ବାହାରି, ରାଜା କହିଲେ ଭଲ ହେଲା, ତେବେ ତେମେ ଆମର ପାଟରାଣୀ ହେବ, ରାଜା ତାକୁ ସୁଆରରେ ବସାଇଲେ, ନେଇ କରି ଗଲେ । ଲୋକେ ସବୁ କହିଲେ, ରାଜା ପାରଧିକି ଯାଇଥିଲେ, ଗୋଟିଏ ନୂଆ ରାଣୀ ଆଣି ଚନ୍ତି, ଏହିପରି କହିଲେ, ଦେଖିକରି ଗଲେ । ରାଜା ଯାକୁ ଆଣି ଘରେ ରଖି ବଡ଼ା ହେଲେ । ଦିନ ଗୁଡ଼ରିଦିନ ଗଲା, ସମସ୍ତଙ୍କ ଯେତେ ଲେଖା ଭାଗ ଦେଉଥନ୍ତି ତାକୁ ସେତିକି ଦେଉଥନ୍ତି । ଏତ ଅସୁରୁଣୀଟାଏ, ଏହା ପେଟ ପୂରୁଚି କୋଉଠି ? ଏ କଣ କଲେ ରାତିଅଧରେ ସମସ୍ତେ ସନ୍ତି ଶୋଇପଡ଼ନ୍ତି, ଯାଏ ହାତୀଶାଳକୁ, ହାତୀ ଗୋଟାଏ ଗିଳେ; ଅସେ କୋଉଦିନ ଘୋଡ଼ା, କୋଉଦିନ ଗାଈ; ଏହିପରି ଗୋଟାଏ ଗିଳେ । ଏମନ୍ତ କରି୨ ଘୋଡ଼ା, ଗାଈ, ହାତୀ ସବୁ ଉଣା ହୋଇଗଲେ । କେହି କିଛି ବୁଝି ପାରନ୍ତି ନାହିଁ, ରାଜା ଖାଲି ଗଉଡ଼ଙ୍କୁ ମାରନ୍ତି, ଅମର ଗାଈ, ଗୋରୁ, ହାତୀ, ଘୋଡ଼ା କଣ କରୁଚ ବୋଲି । ରାଜାଙ୍କର ଅର ସାତ ଭାରିଯାଯାକ ଜାଣିଥାନ୍ତି ସାନରାଣୀ ଖାଉଚି ବୋଲି, ଧରେଇ ଦେଇ ପାରୁ ନ ଥାନ୍ତି ବୋଲି କିଛି ଅଉ କହୁ ନ ଥାନ୍ତି । ଏମାନେ ଦିନେ ଦେଖାଦେଖି ହେଲେ, କହିଲେ ଚାଲ ଅମେ ଗୁହାଳରେ ଲୁଚି-ଥିବା, ଏ କେମନ୍ତ ଖାଇବ ଦେଖିବା । ଏ ଯାଇ ଲୁଚିଛନ୍ତି ଗୁହାଳ କଣରେ, ଅସୁରୁଣୀ ଗଲା ଗୁହାଳକୁ, ଏଣିକି ତେଣିକି ଅନାଇ ଗୋଟାଏ ଗାଈ ଫିଟାଇ ଖାଇଗଲା । ଖାଇସାରି ବାହାରିଗଲା ବେଳକୁ ଅସୁରୁଣୀର ଏମାନଙ୍କ ଉପରେ ନଜର ପଡ଼ିଗଲା; ଅଗବଳାପଡ଼ ଦଉଡ଼ି ଆସି ରାଜାଙ୍କୁ କହିଲା ଦେଖିଲଣି ତେମେ ଚଉଡ଼ହୋଇରକୁ କଣ ମାରୁଛ, ଦମର ତ ଏହିମାନେ ଗୋରୁଗାଈ ଖାଇଯାଉଛନ୍ତି । ରାଜା ଦେଖିଲେ, କହିଲେ ସତେ, ଏମାନେ ତ ଖାଉଛନ୍ତି । ମୋତେ ସେ [illegible]ଡ଼ ମନା କଲେ, ରାଜା ଜମା ମାନିଲେ ନାହିଁ; କହିଲେ ଏମାନଙ୍କୁ

କଣ ଦଣ୍ଡ ଦିଆହେବ ? ଅସୁରୁଣୀ କହିଲା ଖୁବ୍ ବଡ଼ ଗୋଟାଏ ଖୋପର ଖୋଳାଅ, ସେଇଥି ଭିତରେ ଏମାନଙ୍କୁ ପକାଇ ଦିଅ, ଆଉ ଏମାନଙ୍କ ଆଖି ଖୋଳି ରଖ ଯେ ସେଇଥି ଭିତରେ ପଡି କୁଥିଡ଼େ ଯାଇ ନ ପାରି ମରିଯିବେ । ରାଜା କହିଲେ ହଉ, ଖୁବ୍ ବଡ଼ଖୋପର-ଟାଏ ଖୋଳାହେଲା, ଏମାନଙ୍କ ଆଖି ଖୋଳି ରଖି ସେଇଥି ଭିତରେ ପକାଇଦେଲେ, ଖୋପର ଉପରେ ପଟା ପକାଇ ଦେଇଁ ମାଟି ଘୋଡ଼ାଇ ଦେଲେ । ଏ ସାତ ସଉତୁଣୀଯାକ ଗର୍ଭ ହୋଇ ଥାନ୍ତି, ସେ ଖୋପରରେ ପଡ଼ି କେତେଦିନ କଷ୍ଟ ପାଇଲେ; ଆଗ ହୋଇ ବଡ ସଉତୁଣୀର ପୁଅ-ଟିଏ ହେଲା । ସାନ ସଉତୁଣୀକି ଛାଡ଼ି ଆଉ ପାଞ୍ଚ ସଉତୁଣୀ କହିଲେ ହେ ଅଣ ଛୋ ପୁଅକୁ, ସମସ୍ତେ ବାଣ୍ଟି କୁଣ୍ଟି ଖାଇ ପେଟଜାଳା ନିବା-ରଣ କରିବା, ତୋର ଆଗେ ମ ଖାଇଥିବୁ, ଆମର ହେଲେ ତୁ ଖାଇବୁ । ସାନ ସଉତୁଣୀ ଆଉ କିଛି କହିଲା ନାହିଁ । ବଡ଼ ସଉତୁଣୀ କହିଲା ହଉ, ପୁଅକୁ ସାତଖଣ୍ଡ କରିଦେଲା, ନିଜେ ଖଣ୍ଡେ ଖାଇଲା, ଆଉ ଛଖଣ୍ଡ ଛ'ଜଣକୁ ବାଣ୍ଟି ଦେଲା । ଏ ପାଞ୍ଚ ସଉତୁଣୀ ଖାଇଲେ, ସାନ ସଉତୁଣୀ ଆଉ ଖାଇଲା ନାହିଁ, ରଖିଦେଇ ଥାଏ । ଏହିପରି ଛ ସଉତୁଣୀଙ୍କର ପୁଅ ହେଲା, ସମସ୍ତେ ମାରିକରି ଖାଇ ଦେଲେ ବାଣ୍ଟି କୁଣ୍ଟି କରି, ଆଉ ସାନ ସଉତୁଣୀ ରଖିଥାଏ, ଖାଇ ନ ଥାଏ । ତାର ଯେତେବେଳେ ପୁଅ ହେଲା, ଏ ସବୁ ଲଗାଇଲେ ତୋର ପୁଅକୁ ଦେ ଖାଇବୁଁ, ଏ କହିଲା ତମର ଯାହାକୁ ସବୁ ଦେଇଛ, ତାକୁ ନିଅ ମୁଁ ରଖିଛି, ମୋ ପୁଅକୁ କେହି ଖାଅ ନା । ଏହିପରି କହି ପୁଅଟିକୁ ରଖିଲା । ସମସ୍ତେ ସେ ପୁଅଟିକୁ ଶରଧା କଲେ, ଆଦର କରି ଦୁଧ ଦେଲେ (୧) ରଖିଲେ ଏ ପୁଅଟିକ ଯୋଉଠୁ ଦଶ ବାର ବରଷ ହୋଇଗଲା, ସେ କହିଲା ତମେ ସବୁ ଏଠେଇଁ କାହିଁକି ପଡିଛ କହ,

(୧) ସ୍ତନ୍ୟପାନ କରାଇଲେ ।

ଏମାନେ ସବୁ କହୁଚଲେ ଆଦ'ରୁ ପ୍ରାନ୍ତ ପର୍ଯ୍ୟନ୍ତ, ପୁଅ କହିଲା, ତମମାନଙ୍କ ଦୁଃଖ ଦେଖିବ, ତେମେମାନେ ମତେ ଉପରକୁ ଉଠାଇ ଦିଅ । ଏମାନେ ଅସୁରୁଣୀ ଭୟରେ ନାହିଁ କରୁଥାନ୍ତି । ପୁଅ ଏକସିଦ ଲଗାଇଲା ଯୋଉଠୁଁ ଏମାନେ କଣ କଲେ, ତାଜପରେ ତାଜପରେ ହୋଇ ଠିଆ ହେଲେ, ପୁଅକୁ ଉପରକୁ ଉଠାଇ ଦେଲେ । ପୁଅ ଆସିଲା ଉପରକୁ, ସବୁ ଶୂକରମାନଙ୍କୁ ପଚାରିଲା ରାଣୀଙ୍କ ଉଆସ କେଉଁଠି ? ସମସ୍ତେ ରାଣୀଙ୍କ ଉଆସ ଦେଖାଇ ଦେଲେ । ଏ ଯାଇ ଦଣ୍ଡବତ କଲା ଅସୁରୁଣୀକି, କହିଲା ମୋ ମା ମାନଙ୍କ ଆଖି ଦିଅ । ଏ କହିଲା ମୁଁ ଆଖି ଦେଖି ନାହିଁ । ଏ ସେଇଠୁ ରାଜାଙ୍କ ପାଖକୁ ଗଲା, ଦଣ୍ଡବତ କଲା । ଯାକୁ ଯାହିଁ ରାଜା ଜାଣିଲେ ଯେଉଁମାନଙ୍କୁ ଗାଡ଼ିରେ ପକାଇଛନ୍ତି, ତାଙ୍କରମାନଙ୍କ ପୁଅ ବୋଲି; ରାଜା କହିଲେ ହଉ ଆମ ପାଖରେ ରହ । ଏ କେତେ ଦିନ ରହିଲା । ଅସୁରୁଣୀର ଖାଲି ଫିକର ଲାଗିଥାଏ କେମନ୍ତ ଯାକୁ ମାରିବ । ଦିନେ ମିଛେଟାର ଜର କଲା ବୋଲି ଶୋଇଲା, ରାଜାଙ୍କୁ ଡକାଇପଠାଇ କହିଲା ଆମ ଦେଶରେ ଯେଉଁ ଚଳନ୍ତ ବାଜା, ଝକମକ ପାଣି ଅଛି ସେ ଯେବେ ଆସିବ ଔଷଧ ତିଆରି ହେବ, ମୁଁ ଖାଇଲେ ଜର ଭଲ ହେବ । ରାଜା ଭାବିଲେ କିଏ ଯିବ ଏ ସବୁ ଆଣିବ ? ଅସୁରୁଣୀ କହିଲା, ସେ କଣ ସହଜ କଥା ? ଯେବେ ସେହି ପୁଅ ଯିବ ଆଣିପାରିବ, ନଇଲେ ଆଉ କେହି ଆଣିପାରିବେ ନାହିଁ । ରାଜା କହିଲେ ହଉ, ପୁଅକୁ କହିଲେ । ପୁଅ କଥଣ କଲା, ରାଜାଙ୍କ ଘୋଡ଼ାଶାଳରୁ ଘୋଡ଼ାଟିଏ ନେଲା, ବାହାରିଲା, ଗଲାବେଳେ ଏ ଅସୁରୁଣୀକି ଦଣ୍ଡବତ କରିବାକୁ ଗଲା । ଅସୁରୁଣୀ ଖଣ୍ଡେ ଭାଷା ଲେଖିଲା ଛୋଟଭଉଣୀଙ୍କ ପାଖକୁ, କି ଏ ମୋ ସତଭଉଣୀଙ୍କ ପୁଅ ଯାଉଛି, ଯାକୁ ଯେପରି ମାରି ଖାଇଦେବ; ଆଉ ଯେମନ୍ତ ଏ ରାଜ୍ୟକୁ ନ ଆସିବ । ଏତ ଘିଡ଼ିଉଚରେ ବସିଥିଲା; ପାଠପଢ଼ି ନାହିଁ

ଭାଷା କେଉଁଠୁ ଫଟିବ ? ଭାଷା ଷଣ୍ଢ଼ିକ ଘେନ ଘୋଡ଼ାରେ ତଣ୍ଟି ବାନ୍ଧା-ଇଲା । ଅଧବାଟରେ ହେଲାଣି, ଗୋଟାଏ ଜଉତିଷ ଦେଖିଲା. ତାକୁ କହିଲା ହେ ଏ ଭାଷାକୁ ପଢ଼ିବଟି, ଏଥିରେ ସବୁ କଥଣ ଲେଖା ହୋଇଛ । ଯାହା ସବୁ ଲେଖା ହୋଇଥିଲା, ଜଉତିଷ ପଢ଼ିଗଲା, ଏ ଶୁଣିଲା, କହିଲା ଯେ, ଭାଷାକୁ ଚିରପକାଅ, ଅନ୍ୟଖଣ୍ଡେ ଲେଖିଦିଅ ମୋ ପୁଅ ଯାଉଚି, ତାକୁ ଯେପରି କେହି ଅଣହେଳା କରିବ ନାହିଁ; ଜଉତିଷ ଏପରି ଖଣ୍ଡେ ଭାଷା ଲେଖି ଦେଲା, ଏ ନେଇକରି ଯାଇ ଅସୁରଦେଶରେ ପହଞ୍ଚିଲା । ଭାଷା ଦେଖି ସମସ୍ତେ କହିଲେ, ଆମ ସାନ ଭଉଣୀ ପୁଅ ଆସିଲାଣି । ଏ ସମସ୍ତଙ୍କି ଦଣ୍ଡବତ କଲା । ତାକୁ ସବୁ ଏମାନେ କୋଳେ ପକାଇ ଦେଲେ ନାହିଁ । ଭାରି ଯତ୍ନରେ ରଖା-ଇଲେ, ସବୁ ଘରଦ୍ୱାର ଦେଖାଇ ଦେଲେ; ଏମାନଙ୍କ ଜୀବନ ଯେଉଁ-ଥିରେ ଥିଲା ଓ ସ୍ୱାମୀ ମାନଙ୍କ ଆଖି ଅସୁରୁଣୀ ବାପଘରକୁ ପଠାଇ-ଦେଇଥିଲା ତାକୁ ସବୁ ଦେଖାଇଲେ । ଏ ପଚାରିଲା ଆଖି କେମନ୍ତ ଲାଗିବ ? ଅସୁରୁଣୀଯାକ କହିଲେ, ଝକ୍‌ମକ୍ ପାଣି ଦେଇ ଲଗାଇ ଦେଲେ ଆଖି ସବୁ ଲାଗିଯିବ । ଏହାପରେ ବୁଝାସୁଝା କରି ସାରିଲା, ସେଠାରେ ଦି ଚାରି ଦିନ ରହିଲା; ଦିନେ ଅସୁରୁଣୀଯାକ ଚରିବାକୁ ଯାଇଚନ୍ତି, ଏ କଣ କଲା, ବଗଟ୍ଟମାନଙ୍କ ବେକ ମୋଡ଼ି ଦେଲା ଯେ ଛ ଭଉଣୀଯାକ ସେ ଅଛେ ମରିଗଲେ । ଯୋଉ ଅସୁରୁଣୀ ରଜାଘରେ ଅଛି ତାର ଜୀବନକୁ ନେଇ ଝକ୍‌ମକ୍ ପାଣି, ଚଳନ୍ତ ବାଜା, ମା ମାନଙ୍କ ଆଖି ଘେନ ଘରକୁ ଆସିଲା । ଆସି ରଜାଙ୍କ ପାଖକୁ ଗଲା, କହିଲା, ତମ ରାଣୀ ପରା ଅସୁରୁଣୀ ନୁହେ ? ତାକୁ ଡାକ, ଦେଖିବ କେତେ ଘୋଡ଼ା ହାତୀ ଗାଈ ଗୋରୁ ଖାଇଛି । ରଜା ରାଣୀଙ୍କି ଡକାଇ ପଠାଇଲେ; ଏଣେ ପୁଅ କଣ କରୁଥାଏ, ବଗବେକକୁ ମୋଡ଼ି ଦେଉଥାଏ, ଯେ ଅସୁରୁଣୀର ବେକ ମୋଡି ହୋଇପଡୁଥାଏ । ଅସୁରୁଣୀ ଆସି ପହଞ୍ଚିଲା, ପୁଅ କହିଲା ଏ ପରା ଅସୁରୁଣୀ ନୁହେ ? ଏହାଯଣ ସବୁ ଜଣାପିବ ।

ଆପଣମାନେ ଏଇଠି ବସନ୍ତୁ, ମୁଁ ଆପଣଙ୍କ ହାତୀ ଘୋଡ଼ା ସବୁ ଏହାରଠାରୁ ଅଲଗ କରି ଦେଉଛି । ଏହାପରେ ସେହି ଅସୁରୁଣୀର ବଗଟିକୁ ଦେଖାଇଦେଲା । ଅସୁରୁଣୀ ବଗଟିକି ଦେଖି ଲାଗୁଥାଏ ମତେ ସେ ବଗଟିକି ଦେ, ମୁଁ ତମର ସବୁ ଦେବି, ପୁଅ ଲଗାଇଥାଏ ସବୁ ଦେଇ ଯାଇ ମୁଁ ବଞ୍ଚିଦେବି । ଅସୁରୁଣୀ ବାନ୍ତିକରି ପକାଇଲା ଯେ ହାତୀ ଘୋଡ଼ା ସବୁ ବାହାରିପଡ଼ିଲେ । ଏ ସେଇଠୁ ବଗଟିକି ମାରିଦେଲା, ଅସୁରୁଣୀ ଛଟପଟ ହୋଇ ମରିଗଲା । ଏମାନଙ୍କୁ ଗାଡ଼ିରୁ ବାହାର କଲା, ଟିକ୍ ଟିକ୍ ପାଣି ଲଗାଇ ତାଙ୍କ ଅସ୍ଥି ସବୁ ଯୋଡ଼ିଦେଲା । ରଜା ଆଉ ରାଣୀମାନେ ଖୁବ ସୁଖରେ ରହିଲେ, ଏ ପୁଅକୁ ବାହାଘର କଲେ । ଏ ଆନନ୍ଦରେ ରହି ଘର ଦୁଆର କଲା । ମୁଁ ଗଲିରୁ କଥା ନ କହିଲି । ମୋ କଥାଟି ସରିଲା, ଫୁଲଗଛଟି ଇତ୍ୟାଦି ।






ଗୋଟିଏ ଚକୁଳିଆ ପଣ୍ଡାଟିଏ ଯେ ତାର ସାତ ଝିଅ । ଚକୁଳିଆ ପଣ୍ଡା ନଅଗାଁ ଗଲେ ସେତେ, ଛଅଗାଁ ଗଲେ ସେତେ ଆଣେ, ଖାଇ ରହିଯାନ୍ତି ଏ ଯେ ଆଉ ଅଣ୍ଟେ ନାହିଁ, ଚକୁଳିଆ ପଣ୍ଡା ଭାରିଯାକୁ ଗାଳି ଦିଏ, କହେ, ଯେତେ ଆଣିଦେଲି ଅଣ୍ଟିଲା ନାହିଁ ଆଉ କଣ କରିବି ? ଭାରିଯା କହେ, ପିଲାଏ ତ ଖାଇଯାନ୍ତି ମୁଁ କଣ କରିବି । ଚକୁଳିଆ ପଣ୍ଡା କହେ ପିଲାଙ୍କୁ କାହିଁକି ଦେଉ, ନାହିଁ କରି ଦେଉନାହିଁ ? ଏହାପରେ

ନାଡ଼ କହେ, ଯାଏ ଘର ମାଗି । ହଳଦର ହୁରଯାକୁ କହିଲା, ଅଜ ପିଠାକର, ଚାଉଳ ଦେଇଗଲା, ଗାଧୋଇଗଲା । ଭାରଯା ଚାଉଳ ବାଟି ପିଠା କଲାବେଳକୁ ସାତ ଝିଅଯାକ ଆସିଲେ, କହିଲେ ମା କଣ କରୁଚୁ ଆମକୁ ଦେ । ମା ସାତ ଝିଅଙ୍କୁ ଗୋଟିଏ ୨ ଦେଇଁ ୨ ସବୁ ସରଗଲା । ବାପ ପାଇଁ ଅଉ କିଛି ରହିଲା ନାହିଁ । ବାପ ଗାଧୋଇ ଆସିଲା, କହିଲା ପିଠାପଣ କରିଥିଲୁ ଆଣ । ଏ କହିଲା, ପିଠା ନାହିଁ ସରଗଲାଣି । ପିଲାଏ ଖାଇଦେଲେ, ମୁଁ କଣ କରିବି । ବାପ କିଛି ନ କହି ଚୁପ ହୋଇ ରହିଲା । ମନ କଥା ମନରେ ଥାଏ, ଦି ଘଡ଼ି ଗଲା, ଏ ମିଛରେ ଦାଣ୍ଡଅଡକୁ ଯାଇ ଫେର ଆସି କହିଲା ଅଲୋ ହେ ! ମାମୁଘର କହି ପଠାଇଚ ପିଲାଏ ସବୁ ଯିବେ । ମା କହିଲା, ହଉ ଯାଆନ୍ତୁ, ପିଲାଙ୍କୁ ହଳଦୀ ଟୁକଏ ୨ ଲଗାଇ ଦେଲା, କଳା ସିନ୍ଦୂର ଲଗାଇ ଦେଲା, ପେଡ଼ିରୁ ଶାଢ଼ୀ ଖଣ୍ଡେ ୨ ବାହାର କରି ପିନ୍ଧାଇଦେଇ ବାପ ସାଙ୍ଗରେ ଛାଡ଼ିଦେଲା । ବାପ ନେଇକରି ଗଲା, ଯାଇ ୨ ବଣସ୍ତରେ ଗୋଟାଏ ଅମ୍ବଗଛମୂଳେ ବସାଇଦେଇ କହିଲା ଏଇଠି ବସିଥାଅ, ମୁଁ ପାଣି ପିଇ ଆସେ । ଏହା କହି ବାହାରିଲା, କହିଗଲା ଯାଉଚି, ବାଟରେ ଦେଖିବ ଯେମନ୍ତ ପାଣି ଟୋପା ୨ ହୋଇ ପଡ଼ିଥିବ ମନେ କରିବ ବାପ ଜୀଇଚି; ରକତ ଟୋପା ୨ ହୋଇ ପଡ଼ିଥିଲେ କହିବ ଯେ ବାପ ମଲାଣି । ଏହା କହିଲା, ଗଲା । ଗୋଟାଏ ଛଡ଼ାଇ ମାରି ବାଟରେ ରକତ ଟୋପା ୨ କରି ପକାଇ ଘରକୁ ଥସିଲା ବାହାରି । ପିଲାଏ ବସି ୨ ଯେଉଠୁ ବେଶୀ ସମୟ ହେଲା, ଗଲେ ବାଟ ଦେଖିଦେଖିକା । ଦେଖିଲେ ରକତ ପଡ଼ିଚି ଟୋପା ୨ ହୋଇ, ମନେ କଲେ ବାପକୁ କିଏ ମାରି ସାରିଲାଣି । ଫେରିକରି ଆସି ସେହି ଅମ୍ବଗଛମୂଳେ ବସିଲେ । କାନ୍ଦୁଥାନ୍ତି, କାନ୍ଦି ୨ ରାତି ହେଲା ଯୋଉଠୁ, କହିଲେ ହେ ବୃକ୍ଷରାଜ, ତୁ ଫାଟିଯା, ଆମେ ପଶିଯାଉଁ । ଗଛ ଫାଟିଗଲା, ଏମାନେ ପଶିଗଲେ । ଖାଇବାକୁ ପିଇବାକୁ ନ ପାଇ ଏଥି ଭିତରେ କାନ୍ଦୁଥାନ୍ତି

ସବୁବେଳେ । ଦାନକର ରାଜା ପାରଧିକି ଅସିଥିଲେ ସେହି ବନସ୍ତକୁ । ଏମାନେ ଗଛ ଉପରେ ଗୁଣୁ ଗୁଣୁ ହୋଇ କାନ୍ଦୁଥାନ୍ତି, ମନ୍ତ୍ରୀ ଉପରେ ଲୁହ ଟୋପାଏ ପଡ଼ିଲା । ମନ୍ତ୍ରୀ କହିଲା, ମଣିମା ଗୋଟିଏ କଥା କହିବାକୁ ଭାରି ଭୟ ଲାଗୁଛି । ରାଜା କହିଲେ କଣ କହୁନାହିଁ ? ମନ୍ତ୍ରୀ କହିଲା, ମଣିମା ! ଏ ଗଛରେ କିଏ ଅଛି କାନ୍ଦୁଛି ଯେ ଲୁହ ପଡ଼ିଲା ମୋ ଉପରେ । ରାଜା କହିଲେ ଶୃଙ୍ଖୁଣିଆକୁ ଶୃଙ୍ଖୁଚୁଛି, ଅମ ଭଲକା କି ଛମ ଭଲକା ? ଶୃଖଣିଆ ଶୃଖୁକର କହିଲା, ନାହିଁ ମଣିମା, ଆପଣଙ୍କ ସରସା ( ୧ ) ରାଜା ସେଉଠୁ କହିଲେ, ଅମ ସମାନ ଯେବେ, ହାତ ଧରିକର ଆଣ । ମନ୍ତ୍ରୀ ଯାଇଁ ଦେଖେ ଯେ ସାତଟି ଝିଅ, ତାଙ୍କୁ ସବୁ ହାତ ଧରିକର ନେଇ ରାଜାଙ୍କ ପାଖେ ଠିଆ କରାଇ ଦେଲା । ରାଜା ପଚାରିଲେ, ହଇଲୋ ! ତେମେମାନେ କି ଘର ଝିଅ ? ଏମାନେ କହିଲେ, ଅମେ ଚକୁଳିଆ ପଣ୍ଡା ଝିଅ, ଅମକୁ ଏଠେଇଁ ବାପ ଛାଡ଼ି ଦେଇଗଲା, ଏହିପରି ସବୁ କଥା କହିଗଲେ । ରାଜା କହିଲେ ତେମେ ସବୁ କି କାମ କରିବ ? ଅଗ ବଡ଼କୁ ଡ଼ାକିଲେ, ପଚାରିଲେ ତୁ କି କାମ କରିବୁ ? ଏ କହିଲା, ମୁଁ ସବୁ କରିବି—ଗୃହଳ ଡ଼ୋଲିକ ଭାତ ରାନ୍ଧିବି, ସମସ୍ତଙ୍କୁ ଖାଇବାକୁ ଦେବି, ସାହି ଦେବି, ଦଣ୍ଡଣା ଦେବି, ବାସି କରିବି ଛଅସି କରିବି । ତାପରେ ଭଉଣୀକି ପଚାରିଲେ, ସେ ସେମନ୍ତ କହିଲା —ମୁଁ ଘର ଗଉଣୀକି ବାଟିବି, ପିଠା କରିବି, ସମସ୍ତଙ୍କୁ ଖାଇବାକୁ ଦେବି, ସାହି ଦେବି, ଦଣ୍ଡଣା ଦେବି, ବାସି କରିବି ଛଅସି କରିବି; ଏହିପରି ଆଉ ୬ ଭଉଣୀମାନେ କହିଲେ । ସବା ସାନଭଉଣୀ କହିଲା, ମୁଁ କିଛି କରି ପାରିବି ନାହିଁ—ରାଜାଙ୍କ ପାଟରାଣୀ ହେବି, ସାତପୁଅ,

---

୧ । ସଦୃଶ, ଉପଯୁକ୍ତ ।

ସୁନାନାଙ୍କୀ ଝିଅ ଜନ୍ମ କରିବ । ସେ ଯେପରି କହିଥିଲେ, ରଜା ସେମା-ନଙ୍କୁ ସେହିପରି କାର୍ଯ୍ୟ ଦେଲେ । ସମସ୍ତଙ୍କୁ ନଅରରେ ରଖାଇଲେ, ସାନ ରାଣୀଙ୍କ ପାଟରାଣୀ କଲେ, ରଖିଲେ । ଏହିପରି କେତେ ଦିନ ଗଲା, ସାନରାଣୀର ଗର୍ଭ ହେଲା । ରଜା ଦରବାରକୁ ଯାନ୍ତି । ଯିବାକୁ ଷଣ୍ଡେ ଖଞ୍ଜଣୀ ଦେଇଯାନ୍ତି, କହନ୍ତି ଯେ ଯେତେବେଳେ ତୋ ଦେହ ହେବ (୧) ସେତେବେଳେ ଯାକୁ ବଜାଇବୁ ଯେ ମୁଁ ଆସିବି, କଚେରି ପଛେ ଫାଟି ଯାଉଥିବ, ତୋ ଖଞ୍ଜଣୀବଜା ଶୁଣିଲେ ମୁଁ ଆସିବି । କବାଟ କିଳି ଦେଇଥିବୁ, ତୋ ଭଉଣୀମାନେ ଯେତେ କବାଟରେ ମାରିବେ, କେବେ କବାଟ ଫିଟାଇବୁ ନାହିଁ । ଦିନେ ଏ କଣ କଲା, ମିଛରେ ଠିକଏ ଖଞ୍ଜଣୀ ବଜାଇ ଦେଲା, ଦେହ କିଛି ହେଉ ନ ଥାଏ, ଖଞ୍ଜଣୀବଜା ଶୁଣି କରି ରଜା ଆସିଲେ ତାହାର କଚେରୀ ଭାଙ୍ଗି ଦେଇ । ଆସି ଦେଖିଲେ ବେଳକୁ ଦେହ କିଛି ହୋଇନାହିଁ । ରଜା ବଡ଼ ବିରକ୍ତ ହେଲେ, ରାଣୀଙ୍କ କହିଗଲେ, ଏଣିକି ତୁ ବଜାଇ ୨ ଥକିବୁ ମୁଁ କେବେ ଆସିବି ନାହିଁ । କିଛି ଦିନ ଗଲା ତାହାର, ଏହା ଦେହ ହେଲା, କବାଟକୁ କିଳି ଦେଇଥାଏ, ଖଞ୍ଜଣୀ ବଜାଉଥାଏ, ବଜାଇ ୨ ଥକିଗଲା. ଆଉ ରଜା ଆସିଲେ ନାହିଁ । ଏ ଛଅ ଭଉଣୀ ଧାଇଁ ଏ ଘରକୁ ଗଲେ, କବାଟରେ ମାରିଲେ, କହିଲେ ଆମେ କିଛି କରିବୁ ନାହିଁ ତୁ କବାଟ ଫିଟା । କେତେ କରି କହିଲେ, ରାଣ ନିୟମ ପକାଇଲେ ତୋଙ୍ଗଠୁ, ଏ କବାଟ ଫିଟାଇ ଦେଲା । ଧାଇଁ ଘର ଭିତରକୁ ପଶିଗଲେ, ଶୂଳ ଧରିଲା, ଯେତେବେଳକୁ ପୁଅ ଜନ୍ମ ହେବ, ତେତେବେଳେ କଣ କଲେ, କହିଲେ ଏ ଗାଁରେ ଅଣ୍ଟ ମୁହଁରେ ଅଢ଼ୁଣି (୨) ଢକାଇ ଜନ୍ମ କରନ୍ତି, ଏହା କହି ମୁହଁରେ ଅଢ଼ୁଣି ପକାଇ ଦେଲେ । ପୁଅ ଯେମନ୍ତ ଜନ୍ମ

---

(୧) ପ୍ରସବ ବେଦନା ହେବ ।    (୨) ନଷ୍ଟ ଘୋଡ଼ାଇବାର ବସ୍ତ୍ର

ହୋଇପଡ଼ିଲା; ଧାଈ ଧଡ଼ପଡ଼ କରି ତାକୁ ନେଇଗଲା, ଖତଗଦାରେ ପୋତିଦେଇ ଆସିଲା, ଛୋଟାଏ କାଠକଣ୍ଢେଇ ସେଠାରେ ପକାଇ ଦେଇ ସାନରାଣୀ ମୁହଁରୁ ଅନ୍ଧୁଣି ଫିଟାଇ ଦେଲେ, କହିଲେ କାଠ କଣ୍ଢେଇଟାଏ ଜନ୍ମ କରିଛ । ସାନରାଣୀ କାନ୍ଦି ବୋବାଇ ଭୂମି ହୋଇ ରହିଲା । ରଜା ଆସିଲେ, ପଚାରିଲେ କଣ ଜନ୍ମ ହେଲା ? ଏମାନେ ଆଗଭୁର କରି କହିଲେ କାଠ କଣ୍ଢେଇଟାଏ ଜନ୍ମ କରିଛି । ରଜା କହିଲେ ତେବେ ତା ମୁହଁ ଚାହିଁନା, ତାକୁ ଘୋଡ଼ାଶାଳ ଲଣ୍ଡି ପୋଛୁଥି, ତାର ଚୁଟି କାଟିଦେଇ ଘୋଡ଼ାଶାଳକୁ ପଠାଇ ଦିଅ । ସାନ ରାଣୀର ଚୁଟି କାଟିଦେଇ ଘୋଡ଼ାଶାଳକୁ ପଠାଇଦେଲେ । ସେ ପୁଅକୁ ଯେତେବେଳେ ଖତଗଦାରେ ପୋତିଦେଲେ, ଆଉକେହି ଦେଖି ନ ଥାଏ, କୁକ୍କୁର ଦେଖିଥାଏ । କୁକ୍କୁର ଗଲା, ପିଲାଟିକି ଖତଗଦାରୁ ବାହାର କଲା, ଆଉ ତାକୁ ଖାଇଲା ନାହିଁ, ଚାଟିଚୁଟି ସଫା କରି ଦୁଧ ପିଆଇଲା, ସେହି ଖତଗଦାରେ ରଖିଦେଇ ଆସିଲା । କୁକ୍କୁର ଏହିପରି ସବୁ ଦିନେ କରୁଥାଏ, ଏମନ୍ତେ କେତେଦିନ ଗଲା । ଦିନକରି ଧାଈ ଦେଖିଲା, ବଡ଼ରାଣୀଙ୍କ ଆଗରେ କହିଲା, ଯାନ୍ତ୍ରାଣି ! ଆମେ ଯେଉଁ ପୁଅଟିକି ଖତଗଦାରେ ପୋତି ଦେଇ ଆସିଥିଲୁଁ, ତାରି ପରି ଗୋଟିଏ ପିଲା କୁକ୍କୁର ଖତଗଦାରୁ ବାହାରକରି ଚାଟିଲା, ତାକୁ ଦୁଧ ପିଆଇଲା, ସେହି ଖତଗଦାରେ କୋଉଠି ରଖି ଦେଲା, ଆଉ ତାକୁ ଖାଇଲା ନାହିଁ କି କିଛି କଲା ନାହିଁ । ବଡ଼ରାଣୀ କଣ କଲା, ରଜାଙ୍କ ପାଖକୁ ଖବର ଦେଲା, କହିଲା ରଜାଙ୍କୁ କହିବ ବଡ଼ ରାଣୀଙ୍କୁ ଜର କରିଛି, କୁକ୍କୁର ରକ୍ତରେ ଗାଧୋଇଲେ ଜର ଛାଡ଼ିବ । ଧାଈ ଗଲା ରଜାଙ୍କୁ ସେଇଆ କହିଲା । ରଜା ମନ ଭୋଳ ତ, କହିଲେ ହଉ । କୁକୁର ଏହା ଜାଣିପାରି କୂଅ ପାଖକୁ ଗଲା, ପୁଅଟିକି ପାଣିରେ ପକାଇଦେଲା, କହିଲା ହେ ଗଙ୍ଗାମାତା, ତୁ ଏଇଟିକି ପାଳ, ମତେତ ମାରିବାକୁ କହିଲେଣି । କୂଅଭିତରେ ଗଙ୍ଗାମାତା କଣ

କରନ୍ତି ପୁଅଟିଙ୍କ ଉପରକୁ ଉଠାଇ ଦଅନ୍ତି, ଫେର୍ (୧) ନେଇଯାନ୍ତି, ଏହିପରି ସବୁଦିନେ ଖେଳାଉଥାନ୍ତି, ଦିନେ ଧାଈ ଦେଖିଲା ଯାଇ ବଡ ରାଣୀଙ୍କି କହିଲା, ଆମେ ଯେଉଁପରି ପିଲାଟିଏ ଖତଗଦାରେ ପୋତି ଦେଇଥିଲୁଁ ସେହିପରି ଗୋଟିଏ ପିଲା କୂଅରେ ଖେଳୁଛି । ବଡରାଣୀ ଶୁଣିଲା, ରାଜାଙ୍କ ପାଖକୁ ଖବର ଦେଇ ପଠାଇଲା ଯେ ବଡ଼ରାଣୀଙ୍କ ଦେହ ବ୍ୟସ୍ତ ଅଛି, କାଲି କୂଅକ ପାଣି ବୁହାହେବ, ସେଥିରେ ଯେଉଁ ମାଛ ଅଛି ତାକୁ ଖାଇଲେ ଦେହ ଭଲ ହେବ । ଧାଈ ଗଲା ରାଜାଙ୍କୁ କହିଲା, ରାଜା କହିଲେ ହଉ । ଗଙ୍ଗାମାତା ଶୁଣିଲେ, କାଳୀଗାଈକି କହିଲେ ହେ । ତୁ ଏ ପୁଅଟିକି ରଖ, ଦୁଧ ପିଆଇବୁ, ଖେଳାଇବୁ, ରଖିଥିବୁ । କାଲିତ କୂଅକ ପାଣି ବୁହାଯିବ, ମୁଁ ଆଉ କେଉଁଠି ରଖିବି ? କାଳୀଗାଈ ପୁଅଟିକି ନେଇ ରଖିଲା । ତହିଁ ଆରଦିନ କୂଅରୁ ଠିକକ ଠଉଁ (୨) ପାଣି ବୁହାହେଲା, ଦେଖିଲାବେଳକୁ କିଛି ନାହିଁ । କାଳୀ ଗାଈ ଦିନ କରେ ଅରଣ୍ୟଭିତରକୁ ଯାଏ ଆହାର, ପୁଅକୁ ପେଟଭିତରେ ରଖିଥାଏ, ବାନ୍ତକରି ବାହାର କରେ, ଶୁଏ, ଖେଳାଏ, ଦୁଧ ପିଆଏ, ଫେର୍ ଗିଳି ଦିଏ, ଚରବୁଲି କରି ଆସେ । ଏହିପରି ସବୁଦିନ କରୁଥାଏ । କାଳୀ ଗାଈର ଦୁଧ ଊଣା ହେଲା, ଗଉଡ଼କୁ ମାଡ଼ ହେଲା, କାହିଁକି ଦୁଧ ଊଣା ହେଉଛିବୋଲି, ଗଉଡ଼ କହିଲା ମୁଁ ତ ସବୁଦିନେ ଚରାଇ କରି ଆଣୁଛି, ବାଛୁରିର ଜମା ଦେଖା ସାକ୍ଷାତ ନାହିଁ, ଦୁଧ କାହିଁକି କମ୍ ହେଲା ମୁଁ କଣ କରିବି ? ଦିନକର ଗଉଡ଼ ଲୁଚିକରି ବସିଲା, ଦେଖେ ଯେ ଗାଈ ଗୋଟିଏ ପିଲା ବାହାର କରି ପେଟଭିତରୁ ଦୁଧ ପିଆଉଛି । ଦୁଧ ପିଆଇ ସାରି ପିଲାଟିକି

---

୧ । ପୁନଶ୍ଚ ୨ । ଶେଷ ବିନ୍ଦୁ ପର୍ଯ୍ୟନ୍ତ

ଫେରି ଗିଳିଦେଲା । ରାଜପୁତ୍ର ଏହାକୁ ଦେଖି ବଡ଼ରାଣୀକୁ କହିଲା, ବଡ଼ରାଣୀଙ୍କର ହୁକୁମ ପଡ଼ିଲା ଯେ କାଲିଠାରୁ ଦଣା ହେବ, ତା ମାଂସ ଖାଇଲେ ମୋ ଦେହ ଭଲ ହେବ । କାଲିଠାରୁ ଏହା ଶୁଣି ଘୋଡ଼ାଶାଳକୁ ଗଲା, ପକ୍ଷିରାଜ ଘୋଡ଼ାକୁ କହିଲା ମୁଁ ଏତେଦିନ ଯାଏ ରଖିଥିଲି, ମତେ ତ ହାଣିବାକୁ ବସିଲେଣି, ତୁ ଯାକୁ ନେ, ଯେଉଁ ଆଡ଼େ ଇଚ୍ଛା ସେଆଡ଼େ ନେଇଯା । ଘୋଡ଼ା ପୁଅକୁ ରଖିଲା, ଉପରେ ବସାଇ ନେଇକରି ଗଲା ବାହାରେ । ପକ୍ଷିରାଜ ଘୋଡ଼ା ପବନବେଗରେ ଗଲୁଛି, ଯାଉ୨ ଗୋଟାଏ ଶୋଲ ପୋଖରୀ ପାଖରେ ବାଘୁଆ ଚଢ଼ାଇ ଚଢ଼ାଏ ଅନ୍ଧୁଆ ଛଡ଼ୁଆ ହୋଇ ଗଣ୍ଡି ପଡ଼ି ଯାଇଛନ୍ତି, ଫିଟି ପାରୁ-ନାହାନ୍ତି, ଏହାର ଶବ୍ଦରେ ଫିଟିଗଲେ । ଘୋଡ଼ା ସେଇଠି ଦମ୍ ମାରିଲା, ବାଘୁଆ ଚଢ଼ାଇଗୁଡ଼ିକ କହିଲେ ରାଜପୁଅକୁ, ଆମେ ବାରବର୍ଷ ହେଲା ଗଣ୍ଡି ପଡ଼ିଯାଇଥିଲୁ, ଫିଟି ପାରୁ ନ ଥିଲୁ, ଖାଇ ନ ଥିଲୁ, ପିଇ ନ ଥିଲୁ, ତମେ ଆମକୁ ଉଦ୍ଧାର କଲ, ତମର ଆମେ କଣ ଉପକାର କରିବୁ ? ରାଜପୁଅ କହିଲା ଅଇଟୁକା (୧) ତମର କିଛି କରିବାର ଦରକାର ନାହିଁ, ଯେତେବେଳେ ମତେ ବିପତ୍ତି ପଡ଼ିବ ତେମେ ସେତିକବେଳେ ମୋର ଉପକାର କରିବ । ଏହା କହି ପକ୍ଷିରାଜ ଘୋଡ଼ା ଉପରେ ଚଢ଼ି ସେଠାରୁ ଗଲା, ଯାଇଁ ଏକ ରାଜାଦେଶରେ ପହଞ୍ଚିଲା, ସେଠାରେ ଗୋଟିଏ ମାଲୁଣୀଘରେ ରହିଲା । ଦି ଚାରିଦିନ ଗଲା, ମାଲୁଣୀ ଫୁଲ ଗୁନ୍ଥୁଛି, ଏ ପୁଅ କହିଲା, ହଇଲୋ ମାଉସି କାହାପାଇଁ ଫୁଲ ଗୁନ୍ଥୁଛୁ ? ମୁଁ ଖଣ୍ଡିଏ ଗୁନ୍ଥନ୍ତି ? ମାଲୁଣୀ କହିଲା ରାଜାଙ୍କ ଜେମା (୨) ପାଇଁ ଫୁଲ ଗୁନ୍ଥୁଛି, ତୁ କୋଉଠି ଗୁନ୍ଥିବୁ, ଅବୁଝିଆ

---

୧ । ବର୍ତ୍ତମାନ     ୨ । ଝିଅ

ହେବ । ଏ କହିଲା ମୁଁ ଖଣ୍ଡିଏ ଗୁନ୍ଥେଁ ତୁ ଦେଖ୍, ସୁନ୍ଦର ହେଲେ ନେଇଯିବୁ ଅସୁନ୍ଦର ହେଲେ ପକାଇ ଦେଇଯିବୁ । ରାଜପୁଅ ଯେଉଁ ଫୁଲଖଣ୍ଡି ଗୁନ୍ଥିଲା ସେ ଅତି ସୁନ୍ଦର ହେଲା, ମାଲୁଣୀ ନେଇ ରାଜଝିଅକୁ ଦେଲା । କେମାଦେଈ କହିଲେ, ଆଜି ଏ ଫୁଲ କିଏ ଗୁନ୍ଥିଛି କି ଏଡ଼େ ସୁନ୍ଦର ହୋଇଛି ? ମାଲୁଣୀ କହିଲା ମୋ ଝିଅଟା ଆସିଛି ସେ ତାହାର ହାତର ଗୁନ୍ଥା । କେମା ସେ ଝିଅଟିକୁ ଦେଖିବାକୁ ଲଗାଇଲେ । ମାଲୁଣୀ ତହିଁ ଆରଦିନ ରାଜପୁଅକୁ ଛଉଁର (୧) ଶାଢ଼ୀ ଖଣ୍ଡେ, ପିତଳଖଡ଼ୁ ହଳେ ପିନ୍ଧାଇ ଦେଇ ରାଜା ନଅରକୁ ନେଇଗଲା କେମା ଏହା ସଙ୍ଗରେ କଥାବାର୍ତ୍ତା ହେଲେ । ରାଜପୁଅ କହିଲା ମୁଁ ଝିଅ ନୁହେ ଅର ଦେଶର ରାଜପୁଅ, ଏମନ୍ତ ଦୁର୍ଘଟଣାରେ ପଡ଼ି ଏଠାକୁ ଆସି ମାଲୁଣୀଘରେ ରହିଅଛି । ଏହିପରି ଦେଖା ସାକ୍ଷାତ ହୋଇ ରାଜପୁଅର ଆଉ ସେ କେମାର ବଡ଼ ମନ ମିଳିଲା । ରାଜପୁଅ ସବୁଦିନେ ରାତିରେ କେମାଙ୍କ ପାଖକୁ ଯିବା ଆସିବା କରେ, ତା ଆଉ କେହି ଜାଣନ୍ତି ନାହିଁ । ରାଜଝିଅ ସବୁଦିନେ ତଉଲା ହୁଏ, ଗୋଟିଏ ଫୁଲର ଓଜନ ହୁଏ, ଯାଡ଼କୁ ବେଶୀ ଓଜନ ହେଲା । ଯେ ବଣିଯା ତଉଳିଲ ସେ ରାଜାଙ୍କୁ କହିଲା ମଣିମା ! ଆପଣଙ୍କ କେମାଦେଈ ଏବେ ବେଶୀ ଭାରି ହେଲେଣି, ଗୋଟିଏ ଫୁଲରେ ଆଉ ଏବେ ଓଜନ ଉଠୁ ନାହାନ୍ତି । ରାଜା ବିଚାର କଲେ ଝିଅପାଖକୁ କିଏ ଆଉ ଆସୁଛି ! ହୁକୁମ ଦେଲେ ଯେ ଅଙ୍ଗ ସିନ୍ଦୂରରେ ବିଛଣା କର, ଯେ ଆସିବ ସେ ଚିହ୍ନାପଡ଼ିବ । ଯୋଦ୍ଧାକୁ କୁହା ହୋଇଥାଏ କି ତୋ ଘରେ ଯେ ଏପରି ଲୁଗା ପକାଇବ ତାକୁ ଧରାଇ ଦେବୁ, ନ ଦେଲେ ତୋର ସବଂଶ ମୁଣ୍ଡ କଟା ହେବ । ସେଦିନ ରାତିକ ରାଜପୁଅ ଆସିଲା । କେମାଦେଈ

---

୧ । ଛଟ ।

କହିଲେ ହେ ! ତେମେ ଅଜ ଯାଅ ବାହାର, ସିନ୍ଦୂରରେ ଲକ୍ଷଣ ହୋଇଛି । ଏ ଅମାନଅହୋଇ ଲକ୍ଷଣରେ ବସାଉଠାକଲା,ଧୋବାକୁ ଟଙ୍କା ଦେଇ ଲୁଗା କଚ୍ଚିର ଅଣିଲା, ଆଉକେହି ଜାଣି ପାରିଲେନାହିଁ । ତହିଁ ଆରଦିନ ଧୋବାକୁ ପଚରି ଦେଲେ, ସେ ନାହିଁ କଲା, କହିଲା, କେହି ମୋ ଘରେ ଲୁଗା ପକାଇ ନାହାନ୍ତି । ରାଜା କହିଲେ ଆଉ କଣ କଲେ ଜଣା ପଡ଼ିବ ? ମନ୍ତ୍ରୀ କହିଲେ, କଂସାର କରତ କରି କବାଟ ଦେହରେ ଦେଇଥାଅ, ଯେ ଅସିବ ତା ଉପରେ ପଡ଼ିଲେ ମରିବ । କଂସାର କରତ ତିଆରି ହେଲା, ନାଗବନ୍ଧ ଦେହରେ ଦିଆଗଲା । ରାଜାପୁଅ ସେଦିନ ସେହିପରି ଆସିଲା, ରାଜାଝିଅ କହିଲା କାହିଁକି ଅସିଲ, ଅଜ କଂସାର କରତ କରି ନାଗବନ୍ଧରେ ଦେଇଛନ୍ତି, ତେମେ ଫେରିଯାଅ । ରାଜାପୁଅ କହିଲା ଓହୋ ! କଣ ହୋଇଯିବ ? ଯେବେ କାଟିକଥା ହୋଇଯିବ, ତେବେ ମତେ ପୋଡ଼ିବ ନାହିଁ କି ପୋତିବ ନାହିଁ, ନେଇକରି ଷୋଳପୋଖରୀ ପାଖରେ ଶୁଆଇ ଦେଇ ଆସିବ । ଏହା କହି ଘରଭିତରକୁ ପଶିଗଲା ବେଳକୁ କରତ ଖସିଲା ଯେ ରାଜାପୁଅ ମୁଣ୍ଡରେ ପଡ଼ିଲା, ରାଜାପୁଅ ସେଇଠି ମରିପଡ଼ିଲା । ତହିଁଆରଦିନ ସବୁ ଦେଖିବାକୁ ଆସିଲେ, ଆସି ଦେଖନ୍ତି ଯେ ଉତ୍ତମ ସୁନ୍ଦର ରାଜାପୁଅଟିଏ ମରିପଡ଼ିଛି । ରାଜା କହିଲେ ଝିଅକୁ ଆହା ! ଏଡ଼େ ସୁନ୍ଦର ପିଲାକୁ ତୁ ବାନ୍ଧିକି ମାରିଲୁ, କହିଥିଲେ ତୋତେ ସେହିଅକୁ ବିଭା କରାଇ ଦେଇଥାନ୍ତି । ଝିଅକୁ ସମସ୍ତେ ଗାଳିଦେଲେ । ରାଜା କହିଲେ ଗୁଆଡ଼ିଅ ଚନ୍ଦନକାଠ ଆଣି ଦାହା କରାଇଦିଅ । ଝିଅ କହିଲା ନାହିଁ ସେ ମନା କରିଛନ୍ତି, କହିଛନ୍ତି ମୋତେ ପୋଡ଼ିବ ନାହିଁ କି ପୋତିବ ନାହିଁ, ଷୋଳପୋଖରୀ କୂଳେ ଶୁଆଇଦେଇ ଆସିବ । ରାଜା କହିଲେ ହଉ ନଅ, ସେ ଯାହାକହିଛି ସେଇଆ କର । ନେଲେ ଷୋଳ ପୋଖରୀପାଖରେ ଶୁଆଇଦେଇ ଆସିଲେ ବାହାର । ସେ ବାପ୍ପାଚଢ଼ାଇ ଯାଇ ଚାଲିଲେ, ସେ ରାଜାପୁଅ ପାଖରେ ବସି ଗୁଣୁ ଗୁଣୁ ହୋଇ

କାନ୍ଦିଲେ । ଏହାପରେ ହାଡ଼ ସବୁ ଅଧ ହେଲା, ଈଶ୍ୱରପାର୍ବତୀ ଆକାଶରେ ଭ୍ରମଣ କରୁଥିଲେ, କାନ୍ଦଣା ଶୁଭିଲା । ପାର୍ବତୀ କହିଲେ, ଏହି ବେଳଠି କାହିଁକି ପୃଥିବୀଟା ଭାରୀ ଲାଗୁଛି, କି ଗୁଡ଼ାଏ ଗଣ୍ଠି ହୋଇ କାନ୍ଦିଲା ପରି ଶୁଭୁଛି । ଈଶ୍ୱର କହିଲେ ଗୁଳ ବାହାର ହୋ ! ଆମର ସେଥିରେ କଣ ଅଛି ? ପାର୍ବତୀ କହିଲେ ନିଶ୍ଚିତ ନାହିଁ, ପୃଥିବୀର ଭାର ନେଇଚ କାହିଁକି ? ଈଶ୍ୱର କହିଲେ ହଉ ଚାଲ । ଚଲେ, ପଚାରିଲେ, ତେମେ କଏ କାହିଁକି କାନ୍ଦୁଛ ? ବାଘୁଣିଚଢ଼ାଇ ଗୁଡ଼ିକ ଆପଣାର ଆଉ ରାଜାପୁଅର ଯେତେ କଥା ଥିଲା ସବୁ କହିଗଲେ । ଈଶ୍ୱରପାର୍ବତୀ କହିଲେ, ହଉ ନେତେବେ ତେଣିକି ମୁହଁ ବୁଜ । ଏମାନେ ସେ ଆଡ଼କୁ ମୁହଁ ବୁଲାଇ ବସିଲେ, ଈଶ୍ୱରପାର୍ବତୀ ଫୁଲପାଣି କର ଛିନିମ୍ବା ଛିଞ୍ଚିଦେଲେ ଯେ ରାଜପୁଅ ଜୀଇଁ ଉଠିଲା, ଈଶ୍ୱରପାର୍ବତୀ କୁଆଡ଼େ ଉଭେଇ ଗଲେ । ରାଜାପୁଅ ତହିଁ ଆର ଦିନ ଉଠି ମାଲୁଣୀଘରକୁ ଗଲା, ସେଦିନ ରାତିରେ ରାଜାଝିଅ ସାଙ୍ଗେ ଦେଖା କଲା । ସେ ବଞ୍ଚିକରି ଆସିଲାଣି ବୋଲି ରାଜା ଜାଣିଲେ, କହିଲେ, ଆମ ଝିଅକୁ ଯାକୁ ବାହାକରି ଦେବା । ଘର ଲିପା ହେଲା, ବେଦୀ ତୋଳା ହେଲା, ବାହାଘରର ଆଉ ସବୁ ଆୟୋଜନମାନ ହେଲା, ରାଜା ଭଲଦିନ ଦେଖି ଝିଅକୁ ସେ ରାଜାପୁଅକୁ ବାହା କରିଦେଲେ, ବହୁତ ଯାନ ଯଉତୁକ ଦେଇ ଝିଅଜୋଇଁଙ୍କୁ ବିଦା କଲେ । ରାଜାପୁଅ ବାହା ହୋଇ ଘରକୁ ଆସୁଚି, ଗାଁପାଖରେ ହେଲାଣି ସମସ୍ତେ କହିଲେ କେଉଁ ରଜା ଆସୁଚି, ଯୁଦ୍ଧ କରିବାକୁ । ରାଜା ଆଉ ପୁଅ ବୋଲି ଜାଣି ନାହାନ୍ତି, ବେକରେ ପାଲଢଉଡ଼ି ଗୋଟାଏ ପକାଇ ଦଣ୍ଡବତ କରିବାକୁ ଚଲେ, ଯାଇଁ ପାଲିଙ୍କି ପାଖରେ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଗଲେ । ଏ ପାଲିଙ୍କିରୁ ଡେଇଁ ପଡ଼ିଲା କହିଲା ଏକଣ ! ତେମେ ବାପ, ମୁଁ ପୁଅ, ତେମେ ମୋ ଗୋଡ଼ତଳେ ପଡ଼ୁଚ ? ରାଜା କହିଲେ ମୁଁ ପୁଅ କୋଉଠୁ ପାଇବି ? ଏ କହିଲା ତମ ଘୋଡ଼ାଶାଳ ଲଣ୍ଡିକୁ

ତାଙ୍କ, ଧାଈକୁ ତାଙ୍କ, ଏମାନେ ସବୁକଥା କହିବେ । ଏମାନଙ୍କୁ ଡକରା ହେଲା, ଏମାନଙ୍କ ଆଗରେ ରାଜାପୁଅ ସବୁ କହିଗଲା, ସେପରି ସେ ଜନ୍ମ ହେବାବେଳେ ଧାଈ କାଠକଣ୍ଢାଇଟାଏ ଦେଖାଇ ତାକୁ ଖତଗଦାରେ ପକାଇଦେଲା, କୁକ୍କୁର, କୁଅ, କାଳୀଗାଈ, ପକ୍ଷିରାଜ ଘୋଡ଼ା ସେପରି ତାକୁ ବଞ୍ଚାଇ ମଣିଷ କଲେ, ସବୁ କଥା କହିଗଲା । ଏ ସବୁ କଥା ମାନିଗଲା । ରଜା ପୁଅବୋହୂକୁ ଘରକୁ ନେଲେ, ଘୋଡ଼ାଶାଳ ଲଣ୍ଡିକୁ ଆଣିଲେ, ତାକୁ ସଫାସୁତୁରା କରାଇ ପାଟପୀତାମ୍ବର ପିନ୍ଧାଇ ଘରକୁ ନେଲେ । ଗୋଟାଏ ଟୋପର ( ୧ ) ଖୋଳାଇ ଏ ଛଅଭଉଣୀଙ୍କ ଧାଈଙ୍କ ତହିଁରେ ପକାଇଦେଲେ, ତଳକଣ୍ଟା ଉପର କଣ୍ଟା ପୁରିଦେଲେ, ମାଟିଚଢ଼ାଇ ଦେଲେ । ରଜା ପୁଅବୋହୂ ସେଠି ଘରଦୁଆର କଲେ, ମୁଁ ଭଲକୁ କଥା କହିଲେ ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।

— ❋❋ —

## ହଳାହଳକୁମର ବା ଶଶିସେନା ଅଭିମନ୍ୟୁ କଥା ।

ଗୋଟିଏ ଦେଶରେ ରାଜାଟିଏ, ତାର ଗୋଟିଏ ଝିଅ । ଝିଅଟି ନାଁ ଶଶିସେନା । ସେହି ଦେଶରେ ଗୋଟିଏ ଟୋକୁଳିଆପଣ୍ଡା ଥାଏ, ତାର

---

୧ । ଖାତ ।

କେହି ନାହିଁ ; ଗୋଟିଏ ଭାରିଯା । ଚକୁଳିଆପଣ୍ଡା ଛଅଟା ଗଲେ ସେପରେ, ନଅଟା ଗଲେ ସେପରେ ଅଣେ, ତାକୁ ନିରସ୍ତ ଭାରିଯା ଖାଇ ପିଇ ସୁଖରେ ଥାନ୍ତି । ଦିନକରେ ଚକୁଳିଆପଣ୍ଡା ନଈକୁ ଗାଧୋଇ ଯାଇଥିଲେ, ନାଗଲୋକର ରଜାରପୁଅ ହଳାହଳକୁମରର ମନ ଦେଖିବାକୁ ବଡ଼ ଇଚ୍ଛା; ସେ ନଈରେ ସାପଛୁଆଟିଏ ହୋଇ ଖେଳୁଥିଲା, ଚକୁଳିଆପଣ୍ଡାର ଢ଼ାଳରେ ପଶି ତା ଘରକୁ ଆସିଲା । ଚକୁଳିଆପଣ୍ଡାର ଭାରିଯା ପାଣି ଢାଳିଲାବେଳେ ଦେଖିଲା ଯେ ସାପଛୁଆଟି ଗୋଟିଏ ଉତ୍ତମ ସୁନ୍ଦର ବାଳକଟିଏ ହୋଇ ଢ଼ାଳରେ ଅଛି । ଚକୁଳିଆପଣ୍ଡା ଦେଖିଲା, ଦିହେଁଯାକ ବଡ଼ ଖୁସି ହେଲେ, ପିଲାଟିକୁ ଆପଣାର ପୁଅକରି ପାଳିଲେ । ପୁଅଟି ନାଁ ଦେଇଥାନ୍ତି ଅଭିମନ୍ୟୁ । ପୁଅଟି ବଡ଼ ହେଲା, ତାକୁ ଚାହାଳିରେ ପାଠ ପଢ଼ିବାକୁ ପଠାଇଲେ । ସେହି ଚାହାଳିରେ ରଜାଝିଅ ଶଶିସେନା ପଢ଼ୁଥାଏ । ଦିନକର ଅଭିମନ୍ୟୁର ଖଡ଼ୀ ସରିଗଲା ଶଶିସେନା ଆଡ଼କୁ । ଏ କହିଲା ହେ ଶଶିସେନା ! ଟିକିଏ ଖଡ଼ୀ ଦେଉଛି ? ଶଶିସେନା କହିଲା ତୁ ସତ୍ୟ କର ଖଡ଼ୀ ଦେବି, ଅଭିମନ୍ୟୁ କହିଲା ଦେ ହୋ ଟେଡ଼ୀ, ସତ୍ୟ ଗୋଟାଏ କଣ ? ଏ କହିଲା ନା, ତୁ ସତ୍ୟ ନକଲେ ମୁଁ କେବେ ଖଡ଼ୀ ଦେବି ନାହିଁ । ଅଭିମନ୍ୟୁ କହିଲା ହଁ, ମୁଁ ସତ୍ୟ କଲି ଖଡ଼ୀ ଦେ, ଏ ସେଇଠୁଁ ଖଡ଼ୀ ଦେଲା । ଚାହାଳି ଛୁଟି ହେଲା, ଯେ ଯାହା ଘରକୁ ଗଲେ । ତହୁଁ ଆଉ ଦିନ କେହି ଆସିନାହାନ୍ତି, ଏକା ଶଶିସେନା ଚାହାଳିରେ ଅଛି, ତେଣୁ ଅଭିମନ୍ୟୁ ଆସି ଶଶିସେନାର ଆଖିକି ବୁଜି ଧଇଲା, ଖୁବ୍ କଟମଟ କରି ବୁଜି ଧଇଲା, କହିଲା କାଲି କାହିଁକି ସତ୍ୟ କରାଇଥିଲୁ କହ । ଶଶିସେନା କହିଲା ମତେ ତେମେ ବିଭା ହେବ, ଅଭିମନ୍ୟୁ କହିଲା ହଉ ମାତ୍ର ଆମର ଏ ରାଜ୍ୟରେ ଆଉ ରହିବା ନାହିଁ । ଶଶିସେନା କହିଲା ହଉ ଚାଲି ଯିବା ଆଉ କେଉଁ ଦେଶକୁ । ଗଲେ ଘୋଡ଼ାଶାଳରୁ ଗୋଟିଏ ମହଣିଆ ଘୋଡ଼ାଟିଏ ହସୁଥିଲା ଆଣିଲେ, ଛାଟ ଆଣିଲେ,

ବାରହାତ ଖଣ୍ଡା ଆଣିଲେ, ଦୁହେଁଯାକ ଘୋଡ଼ାରେ ବସିଲେ, ଗଲେ । ଯାଉଛନ୍ତି, ବାଟରେ ଗୋଟାଏ ଠେକୁଆଲାଙ୍ଗୁଡ଼ ପଡ଼ିଛି, ସେ କହିଲା ମତେ ସାଙ୍ଗରେ ନିଅ ତମର ବଡ଼ ଉପକାରରେ ଆସିବ । ଶଶିସେନା କହିଲା ହଉ ଆଣ । ତାକୁ ଆଣିଲେ, ଘୋଡ଼ା ଲାଙ୍ଗୁଡ଼ରେ ବାନ୍ଧି-ଦେଲେ, ନେଇକରି ଗଲେ । ଫେର୍ ଆଉ କେତେଦୂର ଯାଇଛନ୍ତି, କୁଲା ବାଉଁଶିଆ ଗୁଡ଼ାଏ ଯାଉଛି ହଟା ହେବାକୁ, ଠେକୁଆଲାଙ୍ଗୁଡ଼ କହିଲା ଅଭିମନ୍ୟୁ ! ଏଥିରୁ ଦିଟା ନିଅ, ବହୁତ ଉପକାରକୁ ଆସିବ, କୁଲା ବାଉଁଶିଆ ଦିଟା ନେଲେ । ଆଉ କିଛିଦୂର ଯାଇଛନ୍ତି, ଲଙ୍ଗଳ ଲୁହାଟାଏ ବାଟରେ ପଡ଼ିଛି, ଠେକୁଆ ଲାଙ୍ଗୁଡ଼ କହିଲା ଅଭିମନ୍ୟୁ ! ଏଇଟାକୁ ନିଅ ବହୁତ ଉପକାର କରିବ । ତାକୁ ନେଲେ, ଯାଇ ଗୋଟିଏ ବୁଢ଼ୀ ଅସୁରୁଣୀ ଦୁଆରେ ରାତି ହେଲା, ସେଇଠି ରହିଲେ । ବୁଢ଼ୀ ଅସୁରୁଣୀ ବଡ଼ ଆଦର କଲା, ଗୋଟାଏ ଘରେ ନେଇ ଏମାନଙ୍କୁ ରଖାଇ ଦେଲା । ଏମାନେ ଆଉ ଜାଣନ୍ତି ନାହିଁ ଅସୁର ଘର ବୋଲି । ଅଛନ୍ତି, ଅସୁରୁଣୀର ପୁଅଯାକ ବୁଲି ଯାଇଥିଲେ, ରାତିକି ସମସ୍ତେ ଆସିଲେ । ବୁଢ଼ୀ ଅସୁରୁଣୀ କହିଲା ଆସ ତମପାଇଁ ଆଜି ସୁନ୍ଦର ଦରବ ରଖିଛି, ସତ ଭାଇଯାକ ଆନନ୍ଦରେ ଖାଇବ । ଏ ସବୁ କହିଲେ କାହିଁ, ବୁଢ଼ୀ ଅସୁରୁଣୀ କହିଲା ଆରଘରେ ଅଛନ୍ତି । ଏମାନେ ଦଉଡ଼ିଲେ, ସେ ଘରେ ଅଭିମନ୍ୟୁହେଶରିକା । କବାଟ କିଳି ନିଘୁମ ହୋଇ ଶୋଇଛନ୍ତି । ଏ ପଚାରିଲେ ତମେ କିଏ ? ଠେକୁଆ ଲାଙ୍ଗୁଡ଼ କହିଲା ଆମେ ଅସୁରଙ୍କ ଶଶୁର । ଏ ସବୁ ଡରିଲେ, ଭାବି-ଲେ ଆମେତ ଅସୁର, ଆମର ଗୋଟାଏ ଶଶୁର କୋଉଠୁ ଆଇଲା ? କହିଲେ ଆଚ୍ଛା ହଉ ତମେ ଯେବେ ଅସୁରଙ୍କ ଶଶୁର ତେବେ ତମ ଜିଭ କାହିଁ ଦେଖାଅ ? ଠେକୁଆଲାଙ୍ଗୁଡ଼ ଲୁହାଟାକୁ ଦେଖାଇଦେଲା । ତମ ପାଟି କାହିଁ ଦେଖାଅ ? ଏ କାଉଁଶିଆକୁ ଦେଖାଇ ଦେଲା, ତମ ଦାନ୍ତ କାହିଁ ଦେଖାଅ ? ଏ ଲଙ୍ଗଳଲୁହାଟାକୁ ଦେଖାଇଦେଲା ।

ଅସୁରରାଜ ଭୟ କରି ରହିଲେ, କହିଲେ ସେ କାଳେ ଆମର ଶତ୍ରୁ ହୋଇଥିବେ । ଗଡ଼ରେ ଖାଇପିଇ ଶୋଇଲେ, ଏମାନଙ୍କ ନିଦ ଭାଗ ଠେଲୁଅଲଙ୍ଗୁଡ଼ ଅଭିମନ୍ୟୁ ଶଶିସେନାକୁ ଉଠାଇ ସବୁକଥା କହିଲା, ଏମାନେ ରାତି୨ ଘୋଡ଼ାରେ ବସି ଗଲେ ବାହାରି । ସକାଳ ହେଲାରୁ ଅସୁରମାନେ ଦେଖନ୍ତି ଯେ କେହି ନାହିଁ । ବୁଢ଼ୀ ଅସୁରୁଣୀ କହିଲା ଦେଖିଲ, ଏବେ ଚଢ଼ାକାଳ ଗୁଞ୍ଜିଗଲେ, ଯାଅ ମୁଁ ଘୋଡ଼ା ଲଙ୍ଗୁଡ଼ରେ ସୋରିଷ ବାନ୍ଧିଦେଇଛି, ସୋରିଷ ବୁଣି୨ ଯାଉଥିବ, ଗଛ ଉଠି୨ ଯାଉଥିବ; ଫୁଲ ଫୁଟି୨ ଯାଉଥିବ; ଦେଖିବ ସେମାନେ ସେହି-ବାଟେ ଯାଉଥିବେ । ଅସୁର ସାତଭାଇ ଦଉଡ଼ିଲେ ସେହି ବାଟେ ଦେଖୁଁ ଦେଖିଲା । ପାଖରେ ମିଶିବାକୁ ଅଳପ ବାଟ ଅଛି ଶଶିସେନା ଅନାଇ ଦେଲା, ଦେଖିଲାବେଳକୁ ଅସୁରଗୁଡ଼ାକ ଗୋଡ଼ାଇଛନ୍ତି । ଅଭିମନ୍ୟୁକୁ ଦେଖାଇ ଦେଲାରୁ ଅଭିମନ୍ୟୁ କଣ କଲା ଗୁଡ଼ାଏ ବେତମଞ୍ଜି ବୁଣି-ଦେଲା ଯେ ବେତବଣ ହୋଇଗଲା । ଅସୁର ତାକୁ ମାନିଲେ ନାହିଁ, ମାଡ଼ିଦେଇଗଲେ । ଅଭିମନ୍ୟୁ ପଛକୁ ଅନାଇ ଦେଖେ ଯେ ଅସୁର ଗୋଡ଼ାଇ ଆସୁଛନ୍ତି । ସେ ସେଉଠୁ ଗୁଡ଼ାଏ ଅଙ୍ଗାର ବୁଣି ଦେଇ କହିଲା ଯେବେ ସତ୍ୟଯୁଗ ହୋଇଥିବ, ଖାଲି ଅଗ୍ନିମୟ ହୋଇଯିବ । ସବୁ ଅଗ୍ନିମୟ ହୋଇଗଲା, ଅସୁର ନିଆଁକୁ ମାନିଲେ ନାହିଁ ମାଡ଼ି—ଦେଇ ଚାଲିଗଲେ, ତାଙ୍କପଛକୁ୨ ଲାଗିଗଲେ । ଅଭିମନ୍ୟୁ ସେଉଠୁ କଣ କଲା, ପଛକୁ ଅନାଇ ଫୁଙ୍କର ଫୁଙ୍କିଦେଲା ଯେ କୁହୁଡ଼ି ଘୋଟିଗଲା, କାହାକୁ ବାଟ ଦିଶିଲା ନାହିଁ । ଅସୁର ମନଷଗନ୍ଧ ସୁଙ୍ଘି୨ ଘୋଡ଼ାପଛକୁ ଲାଗି-ଗଲେ । ଅଭିମନ୍ୟୁ କହିଲା ମୋର ଆଉ ଦୋଷ ନାହିଁ, ଏହା କହି ଢାଲହାତ ଖଣ୍ଡାକୁ ବୁଲାଇଦେଲା ଯେ ଅସୁରରାଜ ଛଅଭାଇ କାଟି ହୋଇଗଲେ; ଏକା ସବା ସାନଭାଇ ଟିମାଅସୁର ଟି ଘୋଡ଼ା ପେଟତଳେ ଲୁଚିଗଲା । ଟିମାଅସୁର ବାହାରିପଡ଼ି କହିଲା ହେ ମତେ ମାରନା, ମୁଁ ତୁମର ଭଣ୍ଡାରି ହୋଇ ତୁମ ପାଖରେ ରହିବି । ଶଶିସେନା କହିଲା ହଉ

ଥାଉ; ନଥ ତାକୁ ମାରନା । ତାଙ୍କୁ ସଙ୍ଗରେ ନେଲେ,ଯାହା ତୋହର ନିର୍ଜନ ଥାନରେ ଯୋଜିଠ କୁଆଁ କୋଇଲିର ରାବ ନାହିଁ, ମନୁଷର ଠାବ ନାହିଁ ସେଇଠି ପହଞ୍ଚିଲେ, ସେଇଠି ବସାକରି ରହିଲେ । ଶଶିସେନା ରୋଷେଇ ବାସ କଲା, ହମାଅସୁର ତେଲ ନେଇ ଗଲା ଅଭିମନ୍ୟୁ ଗାଧୋଇବ ବୋଲି । ଅଭିମନ୍ୟୁ କେବେବେଳେ ବାରହାତ ଖଣ୍ଡା ହାତରୁ ଛାଡ଼େ ନାହିଁ । ହମାଅସୁର ତେଲ ଲଗାଇ ଦେଉଁ କହିଲା, ସବୁବେଳେ କାହିଁକି ଖଣ୍ଡାଟା ହାତରେ ଧରିଥାଅ ? ରଖିଦିଅ, ମୁଁ ଭଲକରି ତେଲ ଲଗାଇ ଦିଏ । ଅଭିମନ୍ୟୁ ଖଣ୍ଡା ଥୋଇ ଦେଲା । ହମାଅସୁର ତେଲ ଲଗାଇ ଦେଉଚି, କଣ ମନେ ବିଚାରିଲା, ଅଭି-ମନ୍ୟୁକୁ ହାଣି ପକାଇଲା । ହାତଗୋଡ ହାଡ଼କି ପୋତିପକାଇଲା,ଗଣ୍ଡିକି ଗିଳିଦେଲା, ତକ୍ଷଣ ହୋଇ ଘସିପସି ହୋଇ ଗାଧୋଇ ଆସିଲା, ଅଭି-ମନ୍ୟୁର ଲୁଗାକୁ ପିନ୍ଧିଲା; ଗାମୁଛା କାନ୍ଧରେ ପକାଇଲା, ଖଣ୍ଡାକୁ ହାତ-ରେ ଧରିଲା, ଅଭିମନ୍ୟୁ ବେଶଧରି ଗଲା ଶଶିସେନା ପାଖକୁ । ଶଶି-ସେନା ଆଉ ଜାଣେ ନା ହମାଅସୁର ଛଦ୍ମବେଶ ଧରିଚି, ତାକୁ ଭାତ ବାଢ଼ି ଦେଲା. ଅଭିମନ୍ୟୁ ଯେତିକି ଖାଏ ସେତିକି ଦେଲା । ଏତ ଅସୁରଟାଏ, ମୁଁ ପେଟ କୋଉଠି ପୁରୁଚି ? ଶଶିସେନା ଯେତେ ଦେଉ ଥାଏ ପତ୍ରରେ, ଏ ଅଭି ନାହିଁ କରୁ ନ ଥାଏ, ସବୁ ଖାଉଥାଏ । ଶଶି-ସେନା ମନେ ହେଉଥାଏ ଅଜ କାହିଁକି ଏତେ ଖାଉଛନ୍ତି । ଏହିପରି ଭାବ ହେଉଥାଏ, ଅଜ ଫିଟେଇ କରି କିଛି କହୁ ନ ଥାଏ । ଯେତେ ହାଣ୍ଡି ଭାତ ବେଷେଇ କରି ଦେଲା ଏ ସବୁ ଖାଇଲା । କେତେ-ବେଳକେ ଉଠିଲା ଖାଇବାଠାରୁ । ଶଶିସେନା ମନରେ ହୋହୋ ପାଷ ହେଉଥାଏ, ସେ ପଚାରିଲା ହିମାଅସୁର କାହିଁକି ? ଅଭିମନ୍ୟୁ ବେଶ ଧାରୀ ହମାଅସୁର ମୁରୁକିହସା ଦେଇ କହିଲା, ମୁଁ ପରା ହମାଅସୁର । ତମ ଅଭିମନ୍ୟୁ ଜଙ୍ଗଲରେ ବୁଢ଼ା ମଉବାରୁ ମୁଁ ପରା ତାଙ୍କ ଲୁଗାପଟା ପିନ୍ଧି ଆସିଚି ! ଶଶିସେନା ଅଭିମନ୍ୟୁର ବାରହାତ ଖଣ୍ଡାଧରି କହିଲା

ଅଭିମନ୍ୟୁ କୋଉଠି ମରିଚି ଦେଖା, ନଇଲେ ଏହି କ୍ଷଣରେ ତୋର ପ୍ରାଣ ନେବି । ହିମାଅସୁର ଉପରେ ଯୋଉଟି ଗୋଡ଼ହାତ ପୋତିଥିଲା ଦେଖାଇ ଦେଲା । ଶଶିସେନା କହିଲା ଏ ସିନା ହାତଗୋଡ଼, ଗଣ୍ଡି କାହିଁ ? ହିମାଅସୁର ଗଣ୍ଡିକୁ ବାହାର କରି ଦେଲା । ଶଶିସେନା ଅଭି-ମନ୍ୟୁର ଗୋଡ଼ହାତ ମୁଣ୍ଡ ସବୁ ଏକାଠି ଯୋଖି ଦେଲା, ସେଇଠି ବସି କାନ୍ଦିଲା । କାନ୍ଦ ଶୁଣି ଅଧରୁ କଳକଳଣି, ଗୃହଅଡ଼ୁଂ ସଂସ୍ତେ କାଶନ୍ଦ ହେଲେଣି, ଈଶ୍ୱର ପାର୍ବତୀ ଆକାଶରେ ଉଡ଼ି ଯାଉଥିଲେ, ପାର୍ବତୀ କହିଲେ ରହିଥିବେ ଟି, ମଝିରେ କିଏ ଗୋଟିଏ କାନ୍ଦୁଛି । ଈଶ୍ୱରକହିଲେ ଚାଲଯିବା ବାହାର, ଆମର ସେଥିରେ କଣ ଅଛି । ପାର୍ବତୀ କହିଲେ କିଛିତ ବୁଝିବ ନାହିଁ, ଏ ସୃଷ୍ଟି ଭାଇଛ କାହିଁକି ? ଈଶ୍ୱର ପାଖକୁ ଗଲେ, ଶଶିସେନାକୁ ପଚାରିଲେ ତୁ କିଏ,ଭୂତ କି ପ୍ରେତ କି ଡାହାଣୀ କି ଚିରୁଗୁଣୀ କି କିଏ, ତୁ କାହିଁକି ବସି କାନ୍ଦୁଛୁ ? ଏ କହିଲା,ମୁଁ ଭୂତ କି ପ୍ରେତ କେହି ନୁହେ, ଏମନ୍ତ ରାଜାଝିଅ, ଅଭିମନ୍ୟୁ ସଙ୍ଗରେ ଆସି-ଥିଲି, ତାକୁ ହିମାଅସୁର ମାରିପକାଇଚି, ଆଦ୍ୟରୁ ପ୍ରାନ୍ତପର୍ଯ୍ୟନ୍ତ ଏହିପରି ସବୁ କହିଗଲା । ଈଶ୍ୱରପାର୍ବତୀ କହିଲେ ହଉ ତେବେ ଟିକିଏ ମୁହଁବୁଲା, ଫୁଲପାଣି କରି ଉନମୁଠା ଛିଞ୍ଚିଦେଲେ ଯେ ଅଭିମନ୍ୟୁ ଜୀଇଉଠିଲା, ଈଶ୍ୱରପାର୍ବତୀ ଅନ୍ତର୍ଦ୍ଧାନ ହୋଇଗଲେ । ଶଶିସେନା ଅଭିମନ୍ୟୁକୁ ହିମା ଅସୁର ଯାହା କରିଥିଲା ସବୁ କହିଲା । ଅଭିମନ୍ୟୁକହିଲା ଆଉ ମୁଁକୁ ଭୟ ନାହିଁ, ମୁଁଛଭାଇ ମୁଁକୁ ଖୋଜିଲେଣି, ଏହାକହି ତାକୁ ସେଇଠି ହାଣି ପକାଇଲେ, ଆଉ ସେଠାରେ ରହିଲେ ନାହିଁ, ଗଲେ, ଯାଇ ଗୋଟିଏ ରଜା ଦେଶ ର ପହଞ୍ଚିଲେ । ଗୋଟାଏ ଆମ୍ବଗଛ ମୂଳେ ବସିଥିଲେ, ଅଭିମନ୍ୟୁକୁ ଶୋଷ ଲାଗିଲା, ଶଶିସେନାକୁ ସେଇଠି ବସାଇ ଦେଇ ଗଲା ଗାଁ ଭିତରକୁ ପାଣି ପିଇବାକୁ । ଅଭିମନ୍ୟୁ ହାତରେ ଗୋଟାଏ ଜ୍ଞାନଦେଇ ମାଲୁଣୀ ତାକୁ ଡ଼ାକିନେଲା ଘରକୁ, ଗୋଟିଏ କଳାଫୁଲ ଶୁଙ୍ଘାଇ ଦେଇ ତାକୁ ବାଲଅମେଣ୍ଢା କରିଦେଲା, ରଖିଲା । ଶଶିସେନା

ଅନାଇଁ ୨ ଯାଉଁ ଅଭିମନ୍ୟୁ ନ ଆସିଲା, ଗଲା ଖୋଜିବାକୁ ଗାଁ ଭିତରକୁ । ଏଣେ ସହର ଭିତରେ ଢେଣ୍ଡୁରା ଦିଆହେଉଛି ଯେ ସେ ରାଇଜରେ ଗଣ୍ଡାଗଯୂଳ ମାତିଛି, ଯେ ଗଯୂଳକୁ ମାରିଦେବ ସେ ରଜାଝିଅକୁ ବାହାହେବ । ଶଶିସେନା ଗୋଟିଏ ମରଦ ବେଶ ଧରିଲା, ଆଉ ଅନେକ ରଜା ଆଉ ୨ ଦେଶରୁ ଆସିଥାନ୍ତି, ସେ ସବୁ ଯାଉଥାନ୍ତି ଗଣ୍ଡାଗଯୂଳ ମାରିବାକୁ, ଶଶିସେନା ତାଙ୍କ ପଛେ ୨ ଘୋଡ଼ାରେ ଚଢ଼ି ଗଲା । ସମସ୍ତେ ଯାଇ ଗଣ୍ଡାଗଯୂଳ ବନସ୍ତରେ ପହଞ୍ଚିଲେ । ଶଶିସେନା ଠାରେ ବାରହାତ ଖଣ୍ଡା ଥାଏ, ଦୂରରୁ ତାକୁ ବୁଲାଇ ୨ ଫିଙ୍ଗିଲା ଯେ ଗଣ୍ଡାଗଯୂଳ ତିନିଗର ହୋଇପଡ଼ିଲା । ଏ ଦଉଡ଼ିଯାଇ ଗଣ୍ଡା-ଗଯୂଳର ଜିଭ ନଖ କାଟିଆଣିଲା, ଆଉ ସବୁ ରଜାମାନେ ଫେରି ଆସିଲେ । ଶଶିସେନା ଗଣ୍ଡାଗଯୂଳର ଜିଭ ନଖ ରଜାଙ୍କ ଆଗେ ଥୋଇ ଦେଲା, ରଜାଝିଅକୁ ତାକୁ ବିଭା କରିବାର ସ୍ଥିର କଲେ । ବିଭା-ଘର ଯୋଗାଡ଼ ହେଉଥାଏ, ଶଶିସେନା କହିଲା, ମୋର ଗୋଟିଏ ବ୍ରତ ଅଛି ବରଷେ, ମୁଁ ତାକୁ ପୂରଣ କରି ପାରିଲେ ବିଭା ହେବି, ବିଭାଘର ବନ୍ଦ ରହିଲା । ଶଶିସେନା ମରଦବେଶ ଧରି ରଜାଘରେ ଥାଏ, ମନେ ୨ ଅଭିମନ୍ୟୁକୁ ଖୋଜୁଥାଏ । ଅନେକଦିନ ଚାଲିଗଲା, ଅଭିମନ୍ୟୁର କିଛି ଖୋଜଖବର ମିଳିଲାନାହିଁ । ଶଶିସେନା ଗୋଟାଏ ବୁଦ୍ଧି ପାଞ୍ଚିଲା, ବରଷପୂରିବାକୁ ଦଶ ପନ୍ଦର ଦିନ ଅଛି, ରଜାଙ୍କୁ କହିଲା ଏଠେଇ ଯୋଉ ମହାଦେବ ଅଛନ୍ତି, ତାଙ୍କଠାରେ ବାରୁଣୀବୁଡ଼ ପଡ଼ିବ, ଢେଙ୍କୁରା ପିଟାଇ ଦିଅ ଯେ ଏ ରାଇଜରେ ଯେତେ ଲୋକ ଅଛନ୍ତି ସମସ୍ତେ ଆସିବେ ବୁଡ଼ ପକାଇବାକୁ । ରଜା ସେହିପରି କରାଇଦେଲେ ଯୋଉଦିନ ବୁଡ଼ ପଡ଼ିବ ସେଦିନ ସକାଳୁ ଶଶିସେନା ଗାଧୋଇ ଆସି ଘୋଡ଼ାରେ ଚଢ଼ି ଦେଉଳ ଚାରିପାଖ ପୋଖରୀ ଚାରିପାଖ ବୁଲୁଥାଏ, ଅଭିମନ୍ୟୁ ଆଗରୁ ଶୁଣିଥାଏ ଯେ ଜଣେ କିଏ ବାରହାତ ଖଣ୍ଡାରେ ଗଣ୍ଡାଗଯୂଳ ମାରି ରଜାଝିଅକୁ ବିଭା ହେବ ବୋଲି ତାଙ୍କ ଘରେ

ଅଛୁ, ସେ ଏ ବାରୁଣୀବୁଡ଼ କରଉଚ । ମନେ୨ ଭାବୁଥାଏ ଶଶିସେନା କଣ ଛଦ୍ମବେଶରେ ଏପରି କରୁଛ ? ସେ ଦିନ ଅଭିମନ୍ୟୁ କହିଲା ମାଲୁଣୀକି, ମାଉସୀ ! ସମସ୍ତେ ବାରୁଣୀକି ଯାଉଛନ୍ତି, ମୁଁ ଟିକିଏ ଯାନ୍ତି । ମାଲୁଣୀ କହିଲା ନା ତୁ କୋଉଠିକି ଯିବୁ ? ଅଭିମନ୍ୟୁ ଯାଉଁ ଏକଜିଦ୍ ଲଗାଇଲା, ମାଲୁଣୀ ତାକୁ ଗୋଟାଏ ମାଇପୀ ବେଶକରି ସାଙ୍ଗରେ ନେଲା । ଅଭିମନ୍ୟୁ ବୁଡ଼ ପକାଇଲା, ଗଲା ଦେଉଳ ଭିତରକୁ ଦର୍ଶନ କଲା । ସେହି ଦେଉଳ ଭିତରେ ଲେଖି ଦେଇଗଲା—

ଶଶିସେନା ବାଳୀ ମନରେ ଭଳେଣୀ ଅଭିମନ୍ୟୁ ତାର ବର,
ଛଳନା ମାଲୁଣୀ ବନ୍ଦୀ କରିଅଛି ଦିନେ କରେ ମେଷବର ।
ରାତିରେ ଧବଳ ପୁଷ୍ପ ସୁଙ୍ଘାଇଣ କରଇ ଭେଣ୍ଡା ସୁନ୍ଦର,
ଏଥିରୁ ମୁକତ କରିପାରୁ ଯଦି ଶଶିସେନା ବେଗେ କର ।

ଅଭିମନ୍ୟୁ ତ ସ୍ତ୍ରୀଙ୍କ ବେଶ ହୋଇଚି, ଶଶିସେନା ବୁଲି୨ ଆଉ ଭିଡ଼-ଠେଇଁ ତାକୁ ପାଇଲା ନାହିଁ । ଦେଉଳଭିତରେ ଗୁଡ଼ାଏ କଣ ଲେଖା ହୋଇଚି ବୋଲି ପଢ଼ିଲାବେଳକୁ ଅଭିମନ୍ୟୁର କଥା ସବୁ ଲେଖା ହୋଇଚି । ଶଶିସେନା ତହିଁ ଆରଦିନ ମାଲୁଣୀକି ଆଉ ତାର କାଳିଆ ମେଣ୍ଢାକୁ ଘେନାଇ ଆସିଲା, ମାଲୁଣୀକି କହିଲା ତାକୁ ମଣିଷ କରିଦେ, ମାଲୁଣୀ କହୁଥାଏ ମେଣ୍ଢାଟା କିପରି ମଣିଷ ହେବ ? ଆଉ କିଛି କହୁ ନ ଥାଏ । ଯଉଁ ମାଲୁଣୀକି ବିଛୁଆତିରେ ଗୁଡ଼ାଏ ମାଡ଼ ହେଲା, ମାଲୁଣୀ ଧଳାଫୁଲ ସୁଙ୍ଘାଇ ଅଭିମନ୍ୟୁକୁ ନିଜରୂପ କରିଦେଲା । ରଜା ସବୁକଥା ଜାଣିଲେ, ମାଲୁଣୀକି ଶୂଳିଆ ପଦାରେ ଶୂଳିଦେଲେ, ତା ଘରେ ଯେତେ ଧନ ଦରବ ଥିଲା ତାକୁ ନଅରକୁ ଘେନି ଆସିଲେ । ଶଶିସେନା ରଜାଙ୍କ ହାତ ଧରି ପକାଇଲା, କହିଲା ମୁଁ ଆପଣଙ୍କର ଧର୍ମଝିଅ ହେଲି । ଆଜଠାରୁ ଆପଣଙ୍କ ଝିଅକୁ ଆଉ ମୋତେ ଅଭିମନ୍ୟୁକୁ ବାଭାକରିଦିଅନ୍ତୁ । ରଜା ବଡ଼ ଖୁସିହେଲେ, ଶଶିସେନାକୁ ଆଉ ହେମାକୁ

ଅଭିମନ୍ୟୁକୁ ବିଭା କରିଦେଲେ । ଏମାନେ ତିନିହେଁ ଆନନ୍ଦରେ ରହିଲେ । ଏହିପରି ଥାନ୍ତି, ଏଣେ ଅଭିମନ୍ୟୁର ନାଗଲୋକର ଭାଇଯାମାନେ ଭାଇ ଭାବନାରେ ଥାନ୍ତି, ଏ ତ ନରଲୋକକୁ ଯାଇ ସୁଖରେ ରହିଲେ, ଆଉ କଣ ଆସିବେ କି ? ସମସ୍ତେ ବିଚାର କଲେ, ଜଣେ ତାଙ୍କ ଭିତରୁ ଗୋଟିଏ ଶବରୀବେଶ ହୋଇ ଗୁଡ଼ିଏ ଅମରଫଳ ଟୋକାଇରେ ଘେନି ଅଭିମନ୍ୟୁ ଶଶିସେନା ଯୋଉଠି ଅଛନ୍ତି, ସେଇ ଗାଁକୁ ଆସିଲା ଅଭିମନ୍ୟୁର ଦୁଇ ଭାରିଯାଙ୍କ ପାଖକୁ । ଏମାନେ ତିନୋଟି ଅମରଫଳ ମାଗିଲେ କିଣିବାକୁ, ସ୍ତ୍ରୀଙ୍କପାଇଁ ଦୋଟି ଅଭିମନ୍ୟୁ ପାଇଁ ଗୋଟିଏ, ଶବରୀ କହିଲା ଅଭିମନ୍ୟୁତ ଅମର ତାଙ୍କର ଫଳ କଣ ହେବ? ଏହା କହି ଦୋଟି ଫଳ ଦେଲା, ଏମାନେ ପଚାରିଲେ ଅଭିମନ୍ୟୁ ଅମର କେମନ୍ତ ଆମକୁ କହ । ଶବରୀ କହିଲା ତାଙ୍କୁ ପଚାରିବ ସେ ସବୁ କହିବେ, ଏହାକହି ଚାଲିଗଲା । ସ୍ତ୍ରୀଙ୍କର ମନ ଲାଗିଲା, ସେ ଦିନ ଅଭିମନ୍ୟୁକୁ ତାର ନିଜ ନା କଣ ପଚାରିଲେ । ଅଭିମନ୍ୟୁର ନାଗଲୋକ କଥା ମନେ ପଡ଼ିଲା, ସେଠା ଭାଇଯାମାନେ ମନେ ପଡ଼ିଲେ, କହିଲା ମୋ ନାଆଁରୁ ତମେ କଣ ପାଇବ । ଏମାନେ ଏକଜିଦ୍ ଲଗାଇଲେ ଯୋଉଠୁ ଅଭିମନ୍ୟୁ କହିଲା ଆସ ମୋ ସାଙ୍ଗେ ନଈ କୂଳକୁ, ନାଆଁ କହିବି । ସମସ୍ତେ ଗଲେ, ଅଭିମନ୍ୟୁ ନଈରେ ଗ୍ରୀବାକ ପାଣିକି ଗଲା କହିଲା;—

କହ କହ ସୁନ୍ଦରୀ ଗୋ ମୋଠାରେ ଲୋଡ଼ା
କିବା ମୋର ନାମେ ଅଛି ତୁମ୍ଭ ଶରଧା ।

ଏମାନେ କହିଲେ;—

ନ କରନ୍ତି ସ୍ୱାମୀ ଆମ୍ଭଠାରେ ଅବିଶ୍ୱାସ
ନାମରେ ତୁମ୍ଭର ଆମ୍ଭେ ହୋଇବୁଁ ସନ୍ତୋଷ ।

ଅଭିମନ୍ୟୁ କହିଲା,—

ଯାଅ ଯାଅ ସୁନ୍ଦରୀ ଗୋ କରବ ଘର
ମୋ ନାଁ ନାଗଲୋକେ ହଳାହଳ କୁମର ।

ଏହା କହି ଅଭିମନ୍ୟୁ ବୁଡ଼ିଲା ଯେ ଆଉ ଉଠିଲା ନାହିଁ । ଷଣ୍ଢ ସେନା ଆଉ ସେ ରଜାଙ୍କ ଝିଅ ଡାହାବୋବାଇ ହୋଇ ଅଭିମନ୍ୟୁ ଯୋଉଠି ବୁଡ଼ିଥିଲା ସେଇଠି ବୁଡ଼ିଲେ, ଅଭିମନ୍ୟୁ ସାଙ୍ଗେ ଯାଇ ନାଗଲୋକରେ ମିଳିଲେ । ସେଠାରେ ନାଗପତ୍ନୀମାନେ ସ୍ୱାଙ୍କୁ ପାଖେ ପୂରାଇ ଦେଲେ ନାହିଁ । ଏମାନେ ଅପ୍‌ସରାଙ୍କ ସାଙ୍ଗେ ମିଶି ନୃତ୍ୟ କଲେ । ହବୁହିନେ ଏହିପରି ନୃତ୍ୟ କରନ୍ତି, ଖୁବ୍ ଭଲ ସୁନ୍ଦର ନୃତ୍ୟ କରନ୍ତି, ଅଭିମନ୍ୟୁକୁ ଦେଖାନ୍ତି ଆସନ୍ତି । ହଜକର ନାଗରାଜା ବାସୁକୀ କହିଲେ, ଏ ଅପ୍‌ସରା ଯେଉଁଠି ଭଲ ନୃତ୍ୟ କରୁଛନ୍ତି, ସ୍ୱୀଙ୍କୁ ବଦାକୀ କଣ ଦେଉଛ ? ସମସ୍ତେ କହିଲେ ନାହିଁ ସେ କଛି ନେଇ ନାହାନ୍ତି । ନାଗରାଜା ଏ ହିଦିଙ୍କି ଡ଼କାଇଲେ ପଚାରିଲେ, ତମେମ କଣ ନେବ ? ଏମାନେ କହିଲେ ଆମେ କିଛି ନେବୁ ନାହିଁ, ଆମକୁ ଏ ପୁରୁଷଟିକୁ ଦିଅ, ଅଭିମନ୍ୟୁକୁ ଦେଖାଇଦେଲେ । ନାଗପତ୍ନୀମାନେ ନାହିଁ କଲେ ଯୋଉଠୁ, ନାଗରାଜା ଆଉ କିଛି କହି ନ ଥାନ୍ତି । ଏମାନେ ଅଳି ଲଗାଇଲେ ଭାରି, ବାସୁକୀ କହିଲେ, ହଉ ନିଅ, ଏ ନରଲୋକରେ ଛମାସ ରହିବ, ନାଗଲୋକରେ ଛ ମାସ ରହିବ । ଏ ହିଦେ ଅଭିମନ୍ୟୁକୁ ସାଙ୍ଗରେ ଘେନିକରି ଅସିଲେ, ସୁଖରେ ରହିଲେ, ଘରଦୁଆର କଲେ, ମୁଁ ଗଲାକୁ କଥା ନ କହିଲେ । ମୋ କଥାଟି ସରିଲା; ଇତ୍ୟାଦି ।



# ଉଜ୍ଜ୍ୱଳବତୀ କନ୍ୟା କଥା ।

ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ, କଟୁଆଳପୁଅ ଏ ଚାରି ସଙ୍ଗାତ ପଶା ଖେଳୁଥିଲେ । ରଜାପୁଅ ହାରିଲା, କହିଲା ରହ ଆଜି ଦୀପ ଦହୁଡ଼ି, ମଶାଲ ଲଗାଇ ଖେଳିବା, ନ ଜିତିଲେ କେବେ ଉଠିବା ନାହିଁ । ଉଜ୍ଜ୍ୱଳବତୀ ଦେଶର ଗୋଟିଏ ବାହ୍ମଣ ଆସି ସେଠେଇଁ ବସିଥାଏ, ସେ କହିଲା, ଦୀପ ଦହୁଡ଼ି କଣ ? ରଜାପୁଅହେଉରିକା କହିଲେ, ତମେ ଆଜଯାଏ ଦୀପ ଦହୁଡ଼ି କଣ ଜାଣନା ? ତାକୁ ସବୁ ବୁଝାଇ ଦେଲେ । ଏ ବ୍ରାହ୍ମଣ କହିଲା ଆମଦେଶରେ ଉଜ୍ଜ୍ୱଳବତୀ କନ୍ୟା ଯୋଗେ ଦୀପ ଜଳେ ନାହିଁ । ଏହା ଶୁଣି ରଜାପୁଅ ଉଜ୍ଜ୍ୱଳବତୀକି ବାହା ହେବାକୁ ବାହାରିଲା, ମନ୍ତ୍ରିପୁଅସାଙ୍ଗେ ତାର ମନ ମିଳେ, ତାଙ୍କୁ ସାଙ୍ଗରେ ନେଇଗଲା । ଦହେଁଯାକ ଘୋଡ଼ା ଚଢ଼ି ଯାଉଥାନ୍ତି, ବାଟରେ ଗୋଟାଏ ପଥର ଚକଡ଼ା ଥୋଇଛି, ତା ଉପରେ ଦୁଇଜଣ ଚୋର ବସି କଜିଆ କରୁଛନ୍ତି । ସେ ଦିନ ସାଧବଘର ଚୋରି କରି ଆଣିଥାନ୍ତି; ଜଣେ କହୁଛି ମୁଁ ମୋହମଣି, ମନପବନଖଣ୍ଡା ନେବି, ତୁ ଆଉ ସବୁ ପଦାର୍ଥ ନେ, ଆଉଜଣକ ବି ସେଇଆ କହୁଥାଏ । ଏହିପରି କଜିଆ କରୁଥାନ୍ତି, ରାତ ପାହା ହେଲାଣି, ରଜାପୁଅ, ମନ୍ତ୍ରିପୁଅ ବିଚାରକଲେ, ଜଣେ ଏ ପାଖରୁ ବୁଲିଗଲା, ଜଣେ ସେ ପାଖରୁ ବୁଲିଗଲା, ଏହିପରି ଚୋରଙ୍କୁ ଘେରିଗଲେ । ଚୋର ଯାଙ୍କୁ ଦେଖି ପଳାଇଗଲେ । ରଜାପୁଅ ମନ୍ତ୍ରିପୁଅ ମୋହମଣି, ମନପବନଖଣ୍ଡା ରଖିଲେ । ଆଉ ସବୁ ଧନ ଯୋଉ ସାଧବ ଘରୁ ଚୋରି ଯାଇଥିଲା, ତାକୁ ଦେଇଦେଲେ, ଗଲେ, ଯାଇଁ ଉଜ୍ଜ୍ୱଳବତୀ ନଗରରେ ଗୋଟିଏ ଜ୍ଞାନଦେଈ ମାଲୁଣୀଘରେ

ରହିଲେ । ମାଲୁଣୀ ଘରେ ଫୁଲଗୁନ୍ଥୁଥିଲା, ମନ୍ତ୍ରିପୁଅ କହିଲା, ହଇଲୋ ମାଉସି । କାହାପାଇଁ ଫୁଲଗୁନ୍ଥୁଚୁ କ ? ମାଲୁଣୀ କହିଲା, ଉତ୍କଳବତୀ ପାଇଁ, ମନ୍ତ୍ରିପୁଅ କହିଲା, ମୁଁ ଖଣ୍ଡିଏ ଗୁନ୍ଥନ୍ତି ? ମାଲୁଣୀ କହିଲା ଅବୁଝିସ୍ଥା ହେବ । ମନ୍ତ୍ରିପୁଅ କହିଲା ଅବୁଝିସ୍ଥା ହେଲ ରଖିଯିବୁ, ସୁନ୍ଦର ହେଲେ ନେଇଯିବୁ । ମନ୍ତ୍ରିପୁଅ ଖଣ୍ଡିଏ ଗୁନ୍ଥିଲା, ମାଲୁଣୀ ଖଣ୍ଡିଏ ଗୁନ୍ଥିଲା, ମାଲୁଣୀ ଫୁଲଠାରୁ ମନ୍ତ୍ରି-ପୁଅ ଫୁଲଖଣ୍ଡି ସୁନ୍ଦର ହେଲା । ମାଲୁଣୀ କହିଲା ଏ ଫୁଲଖଣ୍ଡି ଦେଇ କାହାନାଆଁରେ କହିବ ? ମନ୍ତ୍ରିପୁଅ କହିଲା, କହିବୁ ମୋ ଝିଅଣି ଆସିଛ ସ୍ନେହ ଗୁନ୍ଥିଛି । ମାଲୁଣୀ ହଣ୍ଡିଯାକ ଫୁଲ ନେଇକରି ଗଲା, ଉତ୍କଳବତୀ ପଚାରିଲା, ଏ ଫୁଲଖଣ୍ଡି କିଏ ଗୁନ୍ଥିଛି କଲୋ । ମାଲୁଣୀ କହିଲା, ମୋ ଝିଅଣି ଗୁନ୍ଥିଛି । ଉତ୍କଳବତୀ କହିଲା ତାକୁ ଟିକିଏ କାଲି ଏଠିକି ଆଣିବୁ, ଦେଖିବି । ତହିଁଆରଦିନ ମାଲୁଣୀ ମନ୍ତ୍ରି-ପୁଅକୁ ଖଣ୍ଡେ ଶାଢ଼ୀ ପିନ୍ଧାଇଦେଲା, ଖଡୁ ଯୋଡ଼ାଏ ଲଗାଇଦେଲା, ନେଇକରି ସାଙ୍ଗରେ ଗଲା । ଦ୍ୱାରୀମାନେ ପଚାରିଲେ, ଏ କିଏ ? ମାଲୁଣୀ କହିଲା ସେ ମୋ ଝିଅଣି । ତାକୁ ବାଟ ଛାଡ଼ିଦେଲେ, ସେ ଉତ୍କଳବତୀକି ଦେଖିକରି ଆସିଲା । ମନ୍ତ୍ରିପୁଅ ଆସି ଉତ୍କଳବତୀର ଗୋଟିଏ ଚିତ୍ର ଲେଖି ରାଜାପୁଅକୁ ଦେଖାଇଲା । ରାଜାପୁଅ ଉତ୍କଳ-ବତୀର ଚିତ୍ର ଦେଖି ମୋହ ହୋଇପଡ଼ିଲା । ମନ୍ତ୍ରିପୁଅ ତାକୁ ଚେତା କଲା ଯେ ରାଜାପୁଅର ଆଉ ଚେତା ହେଲା ନାହିଁ । ମନ୍ତ୍ରିପୁଅ ତାକୁ କିଛି ନ କରି ତେଲକୁଅରେ ପକାଇ ରଖିଦେଲା । ସେ ଦେଶରେ ଗଣ୍ଡାଗୟଳ ବଡ଼ ଉତପାତ କରୁଥାଏ । ରଜାଙ୍କର ଆଜ୍ଞା ହୋଇଥାଏ ଯେ ଗଣ୍ଡାଗୟଳକୁ ମାରିଦେବ ତାକୁ ଉତ୍କଳବତୀ ବିଭା ହେବ । ବହୁତ ରାଜା ମାରିବାକୁ ଆସିଥାନ୍ତି । ସମସ୍ତେ ମାରିବାକୁ ଧାଇଁଚନ୍ତି, ଏ ମନ୍ତ୍ରିପୁଅ ସମସ୍ତଙ୍କ ପଛରେ ଗଲା, ଯାଇ ଗଣ୍ଡାଗୟଳ ବନସ୍ତରେ ପହଞ୍ଚିଲା । ମନ୍ତ୍ରିପୁଅ କଣ କଲା, ମନପବନଖଣ୍ଡାକୁ ଧରିଲା, କହିଲା

ସତ୍ୟଯୁଗର ଯେମନ୍ତ ମନପବନଖଣ୍ଡା ହୋଇଥିବୁ, ମୁଁ ପକାଇଦେଲା-କ୍ଷଣି ଗଣ୍ଡାଗଯୂଳ ଭନଗର ହୋଇ ପଡ଼ିଯିବ । ମନ୍ତ୍ରିପୁଅ ଏହା କହି ଖଣ୍ଡାକୁ ଛାଡ଼ିଲା ଯେ ଗଣ୍ଡାଗଯୂଳ ଭନଗର ହୋଇ ପଡ଼ିଲା । ମନ୍ତ୍ରିପୁଅ ଦଉଡ଼ିଯାଇ ତାର ଜିଭ ନଖ କାଟିକରି ଘେନି ଅଇଲା । ଅଉ ରଜା-ଯାକ କିଏ ଟିକିଏ ରକ୍ତ ଅଣ୍ଟାଚ, କିଏ ଟିକିଏ ଲୁମ ଅଣିଚି ଏହିପରି ସବୁ ଆଣି ରଜାଙ୍କୁ ଯାଇ କହିଲେ, ମୁଁ ମାରିଚି ମୁଁ ମାରିଚି । ମନ୍ତ୍ରିପୁଅ ଜିଭ ନଖ ରଜାଙ୍କ ପାଖେ ନେଇ ଥୋଇଦେଲା, ରଜା କହିଲେ, ଏଇ ମୋ ଝିଅକୁ ବାହା ହେବ । ମନ୍ତ୍ରିପୁଅ ମାଲୁଣୀଘରକୁ ଗଲା, ରଜାପୁଅକୁ ଢେଲରୁ ବାହାର କରି ଢେଲେ ଖୁଆଇଦେଲା; ମୋହ-ମଣିରୁ ଟିକିଏ ଧୋଇ ରଜାପୁଅ ପାଟିରେ ଦେଲାକ୍ଷଣି ରଜାପୁଅ ଜୀଇ ଉଠିଲା । ମନ୍ତ୍ରିପୁଅ ରଜାପୁଅକୁ ବର କରିଦେଲା, ବାହା ହେବାକୁ ଘୋଡ଼ାଉପରେ ବସାଇଲା, ନିଜେ ବର୍ଣ୍ଣାର ହୋଇ ସାଙ୍ଗରେ ଗୋଲ କରି ଗଲା ରଜାନଅରକୁ । ରଜାପୁଅ ଉଜ୍ଜ୍ୱଳବତୀକି ବାହା ହେଲା; ରଜା ଗୋଡ଼ାଏ ଖୁବ୍ ଦାନ ଯଉତୁକ ଦେଲେ, ରଜାପୁଅ ସବୁ ଘେନିକରି ଅସିଲା । ମନ୍ତ୍ରିପୁଅ ସାଙ୍ଗରେ ଥାଏ, ବାଟରେ ସେହି ପଥର ଚକଡ଼ାଠେଇଁ ରାଢ଼ି ହେଲା, ସେଇଠେ ସମସ୍ତେ ଶୋଇଲେ । ମନ୍ତ୍ରିପୁଅ ବରକନ୍ୟାଙ୍କ ପାଲିଙ୍କ ପାଖେ ଜଗିକରି ଶୋଇଥାଏ; ପ୍ରଥମ ପହର ରାତି ହେଇଚ, ଯୋଡ଼ାଏ ସ୍ତ୍ରୀପୁରୁଷ ବାହାରିଲେ । ସ୍ତ୍ରୀ କହିଲା ଆହା ! କି ସୁନ୍ଦର ସ୍ତ୍ରୀପୁରୁଷ ଯୋଡ଼ାଏ ଶୋଇଚନ୍ତି ! ପୁରୁଷ କହିଲା, ସୁନ୍ଦର ହେଲେ କଣହେବ, ପୁଅ ତ ମରିବ, ବୋହୂଟା ବିଧବା ହେବ । ସ୍ତ୍ରୀ କହିଲା, ଅହା ! ଏହା କାହିଁକି କହିଲ ? ପୁରୁଷ କହିଲା, ବାଟରେ ଯାଉଁ ଯାଉଁ ଗୋଟାଏ ଦେଉଳ ପଡ଼ିବ, ରଜାପୁଅ ପାଲିଙ୍କି ତା ପାଖରେ ଯିବାବେଳେ ଦେଉଳ ଭାଙ୍ଗି ପଡ଼ିବ, ସେ ତା ଉପରେ ପଡ଼ିବ । ଏଥିରେ କିଏ ଜେତା ଥାନ୍ତା, ସେବାଟରେ ନ ନେଇ ଅଉ ଗୋଟାଏ ବାଟରେ ବୁଲାଇ ନିଅନ୍ତା ଯେ ରଜାପୁଅ

କହନ୍ତା । ଏହା ଯେ ଅଉ କାହାକୁ କହିବ ସେ ପଥର ହୋଇଯିବ । ଏହା କହି ସେ ସ୍ତ୍ରୀପୁରୁଷ ଦୋଟି ଉଭେଇଗଲେ । ଦ୍ୱିତୀୟ ପହର ରାତିରେ ଅଉ ଦୋଟି ସ୍ତ୍ରୀପୁରୁଷ ବାହାରିଲେ । ସେ ସେମନ୍ତ କଥା-ବାର୍ତ୍ତା ହେଲେ, ସୁନ୍ଦର ହେଲେ କଣ ହେବ, ପୁଅ ତ ମରିବ, ବୋହୂ ଥାଇକରି କଣ କରିବ ? ବରକନ୍ୟା ଘରପାଖରେ ହେଲକ୍ଷଣି ତାପ କଣ କରିବ ପୁଅ ବାହା ହୋଇ ଅସୁଛି ବୋଲି ଗୋଟାଏ ହଜାର ଟଙ୍କାର ଘୋଡ଼ା ଆଣି ଠିଆ କରିଦେବ । ସେଇଟା ତ ମରୁଆଲ ଘୋଡ଼ା, ପୁଅ ଚଢ଼ିଲାକ୍ଷଣି ଘୋଡ଼ା ଫୋପାଡ଼ ଦେବ ଯେ ପୁଅତ ମରିବ, ବୋହୂ ବିଧବା ହେବ, ଏଥିରେ କିଏ ଚେତା ଥାନ୍ତା କି, ତାପ ଘୋଡ଼ା ଆଣି ଦେଲାକ୍ଷଣି ଏ ଯାଆନ୍ତା, ଘୋଡ଼ା ଗୁରଛାପୁରୁ କରି ହାଣି ଦିଅନ୍ତା । ଏହା ଯେ ଅଉ କାହା ଆଗେ କହିବ ସେ ପଥର ହୋଇଯିବ । ଏହା କହି ସେ ଦହେଁ ଉଭେଇ ଗଲେ । ରାତି ତୃତୀୟ ପହର, ଅଉ ଦୋଟି ସ୍ତ୍ରୀ ପୁରୁଷ ବାହାରିଲେ, ସେହି-ପରି କଥାବାର୍ତ୍ତା ହେଲେ । ପୁରୁଷ କହିଲା ପୁଅବୋହୂ ଘରେ ପଶିଛି-ଲାରୁ, ଯୁକ୍ତି ନେଇ ଗୋଟିଏ ପଙ୍କାଘରେ ବସାଇବେ । ସେ ପଙ୍କାରୁ ଦଶହାତ ଛୁଡ଼ପଡ଼ିବ ଯେ ପୁଅତ ମରିବ, ବୋହୂ ବିଧବା ହେବ । ଏଥିରେ କିଏ ଚେତା ଥାନ୍ତା କି, ସେ ପଙ୍କାରୁ ଅଗକର ଦଶହାତ ହାଣି ପକାନ୍ତା । ଏହା ଯେ କାହା ଆଗେ କହିବ ସେ ପଥର ହେବ । ଏହା କହି ସେ ଦହେଁଯାକ ଗଲେ ବାହାରି । ଚତୁର୍ଥ ପହରକୁ ଅଉ ଯୋଡ଼ିଏ ସ୍ତ୍ରୀ ପୁରୁଷ ବାହାରିଲେ । ସେ ସେମନ୍ତ କହିଲେ ଚତୁର୍ଥୀଦିନ ଏ ପୁଅବୋହୂ ଶୋଇଥିବେ, ନାଗନାଗୁଣୀ ଆସି ପୁଅକୁ ଡଂସିଦେବ ଯେ ପୁଅ ମରିବ, ବୋହୂ ବିଧବା ହେବ । ଏଥିରେ କିଏ ଚେତାଥାନ୍ତା କି ସେ ଦିନ ସେ ଘରେ ଲୁଚିକରି ଥାନ୍ତା, ନାଗନାଗୁଣୀଙ୍କି ହାଣି ପକାନ୍ତା । ଏହା ଯେ କାହା ଅଗେ କହିବ, ସେ ପଥର ହୋଇଯିବ, ଏହିପରି କହି ଉଭେଇ ଗଲେ । ରାତି ପାହିଗଲା," ଏ କଥାସବୁ ମନ୍ତ୍ରୀ

ପୁଅ ଶୁଣିଥାଏ, ସମସ୍ତେ ଉଠି ବାହାରିଲେ । ଯାଉ ଯାଉ ବାଟରେ ଗୋଟିଏ ଦେଉଳ ପଡ଼ିଲା, ରଜାପୁଅକୁ ସେ ବାଟେ ନ ନେଇ ଆଉ ଗୋଟାଏ ବାଟରେ ମନ୍ତ୍ରୀପୁଅ ନେଇଗଲା । ସେଠଉଁ ଯାଇ ଗାଁମୁଖରେ ପହଞ୍ଚିଲେ । ରଜା, ପୁଅ ଆସୁଛି ବୋଲି ଶୁଣି ଗୋଟାଏ ଘୋଡ଼ା ପଠାଇ ଦେଲେ । ରଜାପୁଅ ସେ ଘୋଡ଼ାରେ ନ ଚଢ଼ୁଣୁ, ମନ୍ତ୍ରୀପୁଅ ତା ଗ୍ରୀବାଟାପୁରୁ କାଟି ହାଣିଦେଲା । ଏଥିରେ ରଜାପୁଅ ମନେ ମନେ ଭାରି ରାଗୁଥାଏ, କିଛି କହିପାରୁ ନ ଥାଏ । ଏମନ୍ତ ସେ ପଲଙ୍କଘର-ପାଖକୁ ଆସିଲେ । ରଜାପୁଅ ତା ଭିତରକୁ ଯାଉଚି; ମନ୍ତ୍ରୀପୁଅ ସେ ଘରୁ ଦଶହାତ ହାଣିପକାଇଲା । ରଜାପୁଅ ଆହୁରି ରାଗୁଥାଏ । ଚତୁର୍ଥୀ ଦିନ ରାତିରେ ରଜାପୁଅ ଆଉ ଉଜ୍ଜ୍ୱଳବତୀ ଶୋଇଥିଲେ, ମନ୍ତ୍ରୀପୁଅ ଖଟତଳେ ଲୁଚିଥାଏ, ତେଣୁ ନାଗନାଗୁଣୀ ଆସିଲେ, ମନ୍ତ୍ରୀପୁଅ ଖଣ୍ଡା ଧରିଥିଲା ତାଙ୍କୁ ହାଣି ପକାଇଲା । ସେ ଘରୁ ବାହାରି ଆସୁଚି, ଦେଖିଲା ଯେ ଉଜ୍ଜ୍ୱଳବତୀ ଦେହରେ ଟୋପାଏ ରକ୍ତ ଛିଟିକି ପଡ଼ିଚି । ଧଡ଼ପଡ଼ ହୋଇ ପୋଛିଦେଲାବେଳକୁ ଉଜ୍ଜ୍ୱଳବତୀର ନିଦ ଭାଙ୍ଗିଗଲା । ରଜାପୁଅ ଉଠିଲା, ଭାରି ରାଗିକରି କହିଲା, ତୁମେ କାହିଁକି ଏ ଘରେ ପଶିଥିଲ କହ । ମନ୍ତ୍ରୀପୁଅ କହୁଁଥାଏ ସଙ୍ଗାତ, ମତେ ସେ କଥା ପଚାରନା, କହିଲେ ପଥର ହୋଇଯିବି । ରଜାପୁଅ କେତେ ମାନିଲା ନାହିଁ, ଭାରି ଜିଗିର ଲଗାଇଲା । ମନ୍ତ୍ରୀପୁଅ ଆଉ କଣ କରିବ, ସବୁ କହିଗଲା, ସେଇଠି ପଥର ହୋଇପଡ଼ିଲା । କେମନ୍ତ ସଙ୍ଗାତକୁ ମୁଁ ପଥରକଲି ! ଏହା ଭାବି ରଜାପୁଅ ପାଗଳ ହୋଇଗଲା । ପାଗଳ ହୋଇ କୁଆଡ଼େ ବାହାରିଗଲା । ତହିଁର କେତେଦିନେ ରଜାପୁଅର ଗୋଟିଏ ପୁଅ ହେଲା । ରଜାପୁଅ ଏଆଡ଼େ ସେଆଡ଼େ ବୁଲି ବୁଲି ସେହିସମୟକୁ ଯାଇ ଦିନେ ରାତିରେ ସେହି ପଥରଚକଡ଼ା ଉପରେ ଶୋଇ ପଡ଼ିଥିଲା । ରାତି ଅଧ ହେଲାଣି, ଯୋଡ଼ିଏ ସ୍ତ୍ରୀପୁରୁଷ ବାହାରିଲେ, କହିଲେ, ଅହା ! ସେ ମନ୍ତ୍ରୀପୁଅଟି ପଥର ହୋଇଯିବାରୁ ଏ ବାପୁରା ହୋଇ ଏମନ୍ତ ବୁଲୁଚି,

ଏହାର ଯେମନ୍ତ ହେଜ ନୁଥନ୍ତା; ଏହାର ଗୋଟିଏ ପୁଅ ହୋଇଛି, ସେ ପୁଅକୁ ନଅନ୍ତା, ସେ ପଥର ଉପରେ ହାଣି ଦଅନ୍ତା ଯେ ମନ୍ତ୍ରି-ପୁଅ ଜୀଇ ଉଠନ୍ତା । ରଜାପୁଅର ସବୁକଥା ଚେତ୍ ହେଲା; ଘରକୁ ଫେରିଯାଇ ସେ ପୁଅଟୋଖକୁ ଗଲା । ତାକୁ ନେଇ ସେ ପଥର ଉପରେ କଣ୍ଡଦେବାରୁ ମନ୍ତ୍ରି ପୁଅ ଜୀଇଉଠିଲା । ମନ୍ତ୍ରି ପୁଅ କହିଲା, ସଙ୍ଗାତ ! କି କଲ ?, ମୋ ସ୍ତିରପାଇଁ ପୁଅକୁ ମାଇଲ ? ଯୁଆଡେଇଁ ତ ମୋହମଣି ଅଛି, ତହିଁରୁ ଟିକିଏ ଘୋରିକରି ପୁଅକୁ ପିଆଇ ଦେଲା, ପୁଅ ଜୀଇ ଉଠିଲା । ରଜାପୁଅର ମନ୍ତ୍ରିପୁଅର ଅଗେ ଯେମିନ୍ତ ଥିଲା ସେହି ପରି ମନ ମିଳିଲା, ରଜାପୁଅ ଉତ୍କଳବତୀକି ନେଇ ସୁଖରେ ଘରଦ୍ୱାର କଲା, ମୁଁ ଗଲିରୁ କଥା ନ କହିଲି । ମୋ କଥାଟି ସରିଲା, ଇତ୍ୟାଦି ।

## ମୂଛନାବତୀ କଥା ।

ଗୋଟିଏ ରଜାଟିଏ, ତାର ଗୋଟିଏ ପୁଅ । ପୁଅକୁ କନ୍ୟା ଘର ଲୋଡ଼ିଲେ । ପୁଅ କହିଲା ମୁଁ କନ୍ୟାକୁ ଦଶ ବାଧା ମାରିବି ସେ ଯେବେ ସହିବ ମୁଁ ତେବେ ତାକୁ ବିଭା ହେବି । ଯୋଉଁ ରଜା ଏ କଥା ଶୁଣିଲେ, ସେ କହିଲା ମୁଁ କାହିଁକି ବିଭା କରିବି, ମୋର କଣ ଝିଅକୁ ବର ମିଳୁନାହିଁ ? ଏହିପରି ସମସ୍ତେ ନାହିଁ କଲେ । ସେଅଡ଼ ଦେଶର ରଜାଘରକୁ ଭଲଲୋକ ଗଲେ । ରଜା ନାହିଁ ନାହିଁ ହେଉଥାଏ, ଝିଅ କେମନ୍ତ ଶୁଣିପାରି କହିଲା, ହଉ ମୁଁ ବିଭା ହେବି, ବାପା କାହିଁକି ନାହିଁ କରୁଛନ୍ତି । ଝିଅ ଯୋଉଁଠୁ ରାଜୀ ହେଲା ରଜା କହିଲେ ହଉ ବିଭାଘର କର, ଝିଅ ତ ମଙ୍ଗୁଛି ଆମର କଣ ଅଛି ? ବିଭାଘର ସରିଲା,

ବରକନ୍ୟା ଘରକୁ ଆସିଲେ, ଚତୁର୍ଥୀଦିନ ସଞ୍ଜରେ ରଜାପୁଅ ସେ ରଜାଝିଅକୁ କହିଲା, ମୁଁ ଆଗ ତମକୁ ଦଶବାଡ଼ି ମାରିବି ଆସ । ରଜାଝିଅ କହିଲା ହଁ ମାରିବ ଯେ, ମୁଁ ଯେଉଁ କଥାଟି କହୁଚି ତା ଯେବେ କହିପାରିବ ତେବେ ମାରିବ । ଏ ପଚାରିଲା କଥାଟି କଣ ? ରଜାଝିଅ କହିଲା, ସେ ଦେଶର ରଜାଝିଅ ମଞ୍ଜୁନାବତୀ ଅଛି, ତାକୁ ଯେ କଥା କୁହାଇବ ସେ ତାକୁ ବାହା ହେବ, ତମେ ଯେବେ ତାକୁ କଥା କୁହାଇ ପାରିବ, ତେବେ ମତେ ଦଶବାଡ଼ି ମାରିବ । କିଛିଦିନ ଗଲା, ରଜାପୁଅ ମଞ୍ଜୁନାବତୀ ଦେଶକୁ ବାହାରିଲା, କେତେ ଦିନପରେ ମଞ୍ଜୁ-ନାବତୀ ନଗରରେ ପହଞ୍ଚିଲା । ସେଠାରେ ଦୁଇ ଏକ ଦିନ ରହି ମଞ୍ଜୁ-ନାବତୀପୁରକୁ ଗଲା, କହିଲା ଯାଇ, ତମ ଝିଅ କଣ ଆମକୁ କଥା କହିବେ ନାହିଁ ? ଯାଇଁ କହିଲା, ଏପରି କେତେ୨ ରଜା ଆସି ବନ୍ଦଘରେ ପଡ଼ି-ଛନ୍ତି, ବାହା ହୋଇ ପାରି ନାହାନ୍ତି, ସେମାନେ ତ ପଦେ କଥା କେହି ନେଇପାରିଲେ ନାହିଁ, ଆଉ ତମେ ଗୁଡ଼ାଏ ନେବ; ହଉ ଦେଖ । ରାତି ପାଇଗଲା, ଏ ରଜାପୁଅ ଅଉ କଥା ନେଇପାରିଲା ନାହିଁ, ତାକୁ ନେଇ ବନ୍ଦଘରେ ରଖିଲେ । ଏଣେ ଏ ରଜାଝିଅ ( ତାର ଭାରିଯା ) କଣ କଲା—କିଛି ଦିନ ରହିଲା(୧), ଯେଉଁଠୁ ରଜାପୁଅ ନ ଆସିଲା, ଗୋଟାଏ ମରଦ ବେଶ ଧରିଲା, ଘୋଡ଼ାରେ ଚଢ଼ି ମଞ୍ଜୁନାବତୀଦେଶକୁ ବାହାରିଲା । ଯାଉଚି, ବାଟରେ ଅସୁର ଗୁଡ଼ାଏ ପଶା ଖେଳୁଚନ୍ତି ଯେ କେହି ଜିତି ପାରୁନାହାନ୍ତି କି ହାରୁନାହାନ୍ତି । ଯାକୁ ଦେଖି ସେମାନେ କହିଲେ, ହେ ! ଆମକୁ ଟିକଏ ଜିତାଇ ଦିଅ, ଆମେ ତମକୁ ଖାଇବୁଁ ନାହିଁ । ଏ ସେଠାରେ ବସିଲା, ବାଜିଏ ଯାଙ୍କୁ ଜିତାଇ-ଦେଲା, ବାଜିଏ ତାଙ୍କୁ ଜିତାଇଦେଲା, ଏହିପରି ସମସ୍ତଙ୍କୁ ଖୁସି କରିଦେଲା, ସେଉଁଠୁ ବାହାରିଲା, କହିଲା ମୋର ଗୋଟାଏ କାମ ଅଛି, ମୁଁ ଯାଉଚି ।

---

( ୧ ) ଅପେକ୍ଷା କଲା ।

ଏମାନେ କହିଲେ, ଆମକୁ ସାଙ୍ଗରେ ନିଅ, ଆମେ ତମର ବହୁତ ଉପକାର କରିବୁଁ, କହିଲେ, ରଜାଝିଅ ସାଙ୍ଗେ ଗଲେ । ପାଞ୍ଚ ଜଣଯାକ ମଞ୍ଜୁଳାବତୀ ନଗରରେ ପହଞ୍ଚିଲେ । ରଜା ଶୁଣିଲେ, ଏମାନଙ୍କୁ ସବୁ ସିଧା ସରଞ୍ଜାମ ଦେଲେ । ଅସୁର ଚାରିଜଣଙ୍କୁ ଯେତେ ଆଣି ଦେଉଥାନ୍ତି, ସେ କେବେ ମନା କରୁ ନ ଥାନ୍ତି, ଯେତେକ ମାହାଲରେ ପଡିବାପାତ୍ର ଥିଲା ସବୁ ଆଣି ଦେଲେ, ତାକୁ ସୁଦ୍ଧା କଷାରେ ଖାଇଦେଲେ, ଦଶଭରଣ ଚାଉଳର ଭାତ ଖାଇଲେ, ନଈକପାଣି ପିଇ ଗଲେ । ଏହିପରି ଥାନ୍ତି, ଯାଉଁ ସନ୍ଧ୍ୟାବେଳ ହେଲା, ରଜାଝିଅ ସେମାନଙ୍କୁ କହିଲା, ତମେ ଜଣେ ମଞ୍ଜୁଳାବତୀର ଖଟ ଖୁରାରେ ରହିବ, ଜଣେ ଦୀପରୁଖାରେ, ଜଣେ ଚାଳରେ, ଜଣେ ତା ବେକର ହାରରେ ରହିବ, ମୁଁ ଯେତେବେଳେ ଯାହାକୁ ଯାହା ପଚାରିବି ସେ ତାର ଗୋଟିଏ ଅସମ୍ଭବ ଉତ୍ତର ଦେବ । ରାତି ହେଲାରୁ ରଜାଝିଅ ମଞ୍ଜୁଳାବତୀ ପୁରକୁ ଗଲା, ଧାଈକି ପଚାରିଲା ତମ ଝିଅ କଥା କହିବେ ନାହିଁ ? ଧାଇ ସମସ୍ତଙ୍କୁ ଯେପରି କହେ, ସେହିପରି କହିଲା । ଏ କହିଲା, ହଉ ନ କହନ୍ତୁ, ମୁଁ ଗୋଟିଏ କଥା କହୁଚି, ଶୁଣନ୍ତୁ । ଅସୁରମାନେ ଅଦୃଶ୍ୟ ହୋଇ ରଜାଝିଅ ଯେମନ୍ତ କହିଥିଲା ସେହିପରି ସେ ଘରଭିତରେ ଥାନ୍ତି । ରାତି ପ୍ରଥମପ୍ରହର, ରଜାଝିଅ ଗୋଟିଏ କଥା କହିଲା—

## ବେଶ୍ୟା ଓ ଶୁକପକ୍ଷୀ କଥା ।

ଗୋଟିଏ ବେଶ୍ୟାଟିଏ ସେ ଗୋଟିଏ ଶୁଆ ପୋଷିଥିଲା । ଦିନକର ଶୁଆମେଳ (୧) ହେଲା । ଏ ଶୁଆ ବେଶ୍ୟାକୁ କହିଲା ଆମର

(୧) ଶୁଆମାନଙ୍କର ସଭା

ମେଳ ହେଉଛି, ମା ! ମୁଁ ଟିକଏ ସେଠାକୁ ଯାନ୍ତି ? ଏ କହିଲା ହଉ ଯା, ଶୁଆ ଗଲା ମେଳରେ ମିଶିଲା । ମେଳ ଭାଙ୍ଗିବାରୁ ସବୁ ଶୁଆ ଯାକ ଗଲେ ବାହାର । ଏ ଶୁଆ ମନେ ବିଚାରିଲା, ଖାଲି ହାତରେ କଣ ଯିବି, ବେଶ୍ୟାପାଇଁ କିଛି ନ ନେଇଗଲେ ସେ କଣ କହିବ ? ଅନ୍ୟ ଶୁଆମାନେ କହିଲେ, ତାକୁ କଣ ଅପୂରୁବ ଯେ କଣ ନେବୁ ? ନେଲେ ଏହି ବୃଦ୍ଧୀକୟୂସର (୨) ଫଳରୁ ଗୋଟିଏ ନେ । ଏ ସେହି ଫଳରୁ ଗୋଟିଏ ଆଣି ବେଶ୍ୟାପାଖରେ ପକାଇଦେଲା । ବେଶ୍ୟା ସେ ଫଳକୁ ବାରଥାଡ଼କୁ ଫିଙ୍ଗି ଦେଇଥିଲା ଯେ ତହିଁରୁ ଗୋଟିଏ ଗଛ ଉଠି ଏତେବଡ଼ ଗଛ ହୋଇ ଗଇଜର (୩) ଫଳ ଫଳି ପାଚିଥାଏ ଗୋଟିଏ ଖୁବ୍ ସୁପାକଲାଟିଏ, ତାକୁ ସାପ ସୁଙ୍ଘିଦେଇ ଯାଇଥାଏ । ବେଶ୍ୟା ସେହିଟିକି ଅଣିଲା, ଦାନ୍ତ କରଦେଇ ଫାଳେ କାଉ ଆଡ଼କୁ ପକାଇଦେଲା, କହିଲା ଦେଖେଁ କି ଫଳ ଆଣିଛି । କାଉ ସେ ଫଳକୁ ଯେମନ୍ତ ଖାଇଲା, ସେମନ୍ତ ମରିଗଲା । ବେଶ୍ୟା କହିଲା ହଁ ମତେ ମାରିବାକୁ ବିଚାର କରିଥିଲୁ । ଏହା କହି କାଠେ ପକାଇଲା ଯେ ଶୁଆଟି ମରିଗଲା । ତହିଁର କେତେଦିନେ ଧୋବଣୀଟିଏ ଯେ ତାର ସ୍ୱାମୀ ତାକୁ ମାରୁଥାଏ, ସେ ବେଶ୍ୟାବାଡ଼ିର ସେହି ଫଳରୁ ଗୋଟାଏ ଖାଇ ମରିବାକୁ ବିଚାର କରିଥାଏ । ବେଶ୍ୟାଘରକୁ ଲୁଗା ଘେନିକରି ଅସିଲାବେଳେ ସେ ଫଳରୁ ଗୋଟାଏ ଖାଇଦେଲା, ଖାଇଦେଲାକ୍ଷଣି ତାର ଯୁବାବୟସ ହୋଇଗଲା । ବେଶ୍ୟାକୁ ଡାକିଲା, ଲୁଗା ନଅ, ବେଶ୍ୟା ଆଉ ଚିହ୍ନିପାରିଲା ନାହିଁ, କହିଲା ତୋ ଶାଶୁକୁ କ ପଠାଇ ତୁ ଅଇଲୁ କହିଁକି ? ଏ କହିଲା ନାହିଁ ପାଲ୍ଲାଣି । ମୋ ବୋହୂ ଅସିନାହିଁ ମୁଁ ଅସିଛି, ମୁଁ ତମର ବାଡ଼ିର ବିଷଫଳ

---

( ୨ ) ଯେ ଫଳ ଖାଇଲେ ବୃଦ୍ଧାବସ୍ଥା ଲୋପ ହୋଇ ଯୁବା ହେବାକୁ ହୁଏ

( ୩ ) ଅପର୍ଯ୍ୟାପ୍ତ ।

ଖାଉଥିଲି ମରୁଚ ବୋଲି, ଏମନ୍ତ ହୋଇଗଲି । ବେଶ୍ୟା କହିଲା ଆହା ! ମୁଁ କଣ କଲି, ଶୁଆଟିକୁ ମୋର ମିଛରେ ମାରି ପକାଇଲି ! ସେତ ମୋ ପାଇଁ ବୁଢ଼ୀକିପୁଅର ଫଳ ଆଣିଥିଲା ! ଏହିପରି କେତେ ସନ୍ତାପି ହେଲା, ଅଉ କଣ କରିବ, ସ୍ଥିର ହୋଇ ରହିଲା । ଏ କଥାଟି କହିସାରି ରଜାଝିଅ କହିଲା, କହିଲୁ ହେ ଖଟଖଟୁରା, ଏଥିରେ କାହାର ଦୋଷ ? ଖଟଖୁରା କହିଲା ଏଥିରେ ଶୁଆର ଦୋଷ । ମଇନାବନ୍ଦୀଥିଲା କହିଲା, ମୋ ଖଟଖୁରା ହୋଇ ତୁ ଏମନ୍ତ କଥା କହୁଚୁ ? ଏଥିରେ ବେଶ୍ୟାର ଦୋଷ । ରଜାଝିଅ ସେତକ କହିଲା, ଶୁଣିଥାଅ ହୋଧାଇ, ତମଝିଅ ପ୍ରଥମପ୍ରହରର କଥା କହିଲେ । ଏହିପରି ଦ୍ୱିତୀୟପ୍ରହରର ରଜାଝିଅ ଅଉ ଗୋଟିଏ କଥା କହିଲା ।—

## ମହାଜନ ଓ କୁକୁରର କଥା ।

ଗୋଟିଏ ମହାଜନଟିଏ ଯେ ସେ ରଜାପୁଅ ସଙ୍ଗେ ସଙ୍ଗାତ । ସେ ଗୋଟିଏ କୁକୁର ପୋଷିଥିଲା । ରଜାଙ୍କ ନଅରରେ ଭାରି ଚୋର ଗୋଳମାଳ ଲାଗିଲା । ରଜାପୁଅ କହିଲା ହେ ସଙ୍ଗାତ ! ତମ କୁକୁରକୁ ଟିକିଏ ଅଳ୍ପଦିନ ପାଇଁ ଦିଅନ୍ତ କି, ନଅରରେ ଚୋର ଗୋଳମାଲ ଲାଗିଚି, ହେବା ହଅନ୍ତା, ଚୋର ଗୋଳମାଲ ଗଲେ ତମ କୁକୁରକୁ ପଠାଇଦେଅନ୍ତି । ମହାଜନ ରଜାପୁଅ ସାଙ୍ଗେ କୁକୁରକୁ ପଠାଇଦେଲା, କୁକୁର ଦ ଚାରିଦିନ ରହି ରଜାଙ୍କ ନଅରରୁ ଚୋରଙ୍କୁ ଘଉଡ଼ାଇ ଦେଲା, ଅଉ ଜମା ପୂରାଇଦେଲା ନାହିଁ । ଚୋର ଗୋଲମାଲ ଭାଙ୍ଗିଲାରୁ ରଜାପୁଅ କୁକୁରବେକରେ ଖଣ୍ଡେ ଚିଠି ଲଟକାଇଦେଲା । ତିନୋଟି ଟଙ୍କା ବାନ୍ଧିଦେଲା, କହିଲା ଯା, ତୋ ସାଆନ୍ତ ପାଖକୁ, ଏହା କହି ଅଠଦିନ ପୂରିନାହିଁ ପଠାଇଦେଲା । ମହାଜନ ଯାକୁ ଦେଖି ମନେ କଲା ଏ ବାହାରି ଆସିଲା, କହିଲା ନିମକହାରାମ କୁକୁର ତୁ ପଳାଇଆସିଲୁ, ଏହା କହି ଠେଙ୍ଗାଏ ଦେଲା ଯେ କୁକୁରଟି ମରିଗଲା ।

ପରେ ଦେଖେ ଯେ ସ୍ତ୍ରୀ ବେକରେ ଖଣ୍ଡେ ଚିଠି ଲଟକିଛି, ପଢ଼ିଲା-ବେଳକୁ ରଜାପୁଅ ଲେଖିଛି ଯେ କୁକ୍କୁରର କାର୍ଯ୍ୟସାଧନ କରି ଗଲା । ମହାଜନ ବଡ଼ ଝଥେଇହେଲା ( ୧ ) ଆଉ କଣ କରିବ, ଅପଛ କରୁଛି, ଭୂନ ହୋଇ ରହିଲା । ଏତା କହିସାରି ରଜାଝିଅ ପଚାରିଲା ଶୁକ, କହିଲୁ ଏଥିରେ କାହାର ଦୋଷ ? ଶୁକ କହିଲା କୁକ୍କୁରର ଦୋଷ । ଏହା ଶୁଣି ମଞ୍ଜୁନାବତୀ କହିଲା ଉଁ କୁକ୍କୁରର କିପରି ଦୋଷ ହେଲା ? ମହାଜନର ଦୋଷ ହେଲା ନା । ଏ କହିଲା ଶୁଣିଥାଅ ହୋ ଧାଇ, ତମ ଝିଅ ଆମକୁ ଦ୍ୱିତୀୟ ପହର କଥା କହିଲେ । ତୃତୀୟ ପହର ରଜାଝିଅ କହିଲା—

## ରାଣ୍ଡୀବାହ୍ମୁଣୀ ଓ ନେଉଳର କଥା ।

ଗୋଟିଏ ରାଣ୍ଡୀବାହ୍ମୁଣୀ ନେଉଳଟିଏ ପୋଷିଥାଏ । ସେ ଦୁଃଖ ଧନ୍ଦାରେ ଗଲାବେଳେ ନେଉଳକୁ ପୁଅକୁ ଜଗାଇ ଦେଇ ଯାଏ । ଦିନେ ସେ କାହାଘରେ ଧାନ କୁଟିବାକୁ ଗଲା, ନେଉଳକୁ କହି ଗଲା ମୋ ପୁଅ ଏଠାରେ ଶୋଇଛି, ତାକୁ ଜଗିଥିବୁ । ନେଉଳ ଜଗିଥିଲା, ଟିକିଏ ଶୋଇପଡ଼ିଲା । ଏହି ସମୟରେ ସାପ ଆସି ପୁଅକୁ ଦଂଶିଦେଲା । ନେଉଳର ନିଦ ଭାଙ୍ଗିଗଲା, ଅନାଇଁ ଦେଖେ ଯେ ସାପ ଚାଲିଯାଉଛି, ପୁଅ ମରି ପଡ଼ିଛି । ନେଉଳ ଧଡ଼ପଡ଼ ହୋଇ ଉଠି ଆଗ ସାପକୁ ମାରି ପକାଇଲା, ନେଇ କୁଅଡ଼େ ଫୋପାଡ଼ି ଦେଲା, ବଣକୁ ଯାଇ ଅମର ଗଦ ଔଷଧ ଆଣୁଛି ପୁଅକୁ ଖୁଆଇ ବଞ୍ଚାଇବ ବୋଲି ରାଣ୍ଡୀବାହ୍ମୁଣୀ ଆସି ପହଞ୍ଚିଲା, ଦେଖିଲା ଯେ ପୁଅ ମରିଛି, ନେଉଳ ରକ୍ତ ସର ସର ( ୨ ) ହୋଇଛି, ମନେ କଲା

---

( ୧ ) ସନ୍ତାପିତହେଲା, ବ୍ୟସ୍ତ ହେଲା ।     ୧ । ରକ୍ତାକ୍ତ ।

ଏହି ମୋ ପୁଅକୁ ମାରିଦେବାକୁ, ପଦାରେ ପକାଇଲା ସେ ନେଉଳଟି ମରିଗଲା, ତା ପାଟିରୁ ଖଣ୍ଡେ ଚେର ଖସିପଡ଼ିଲା ସନ୍ତୀବାହ୍ମଣୀ ସେ ଚେର ଖଣ୍ଡି ନେଇ ମୋର ପୁଅକୁ ପିଆଇଦେଲା ସେ ପୁଅ ବଞ୍ଚି-ଉଠିଲା । ଘଣ୍ଡ୍ରୀବାହ୍ମଣୀ କହିଲା ଆହା ! ମୁଁ ନେଉଳକୁ କାହିଁକି ମାରିଲି, ସେ ତ ମୋ ପୁଅପାଇଁ ଔଷଧ ଆଣିଥିଲା । ଏହା କହିଲା, ବଡ଼ ବ୍ୟସ୍ତ ହେଲା, ରହିଲା । ଏହା କହି ରଜାଝିଅ କହିଲା, କହିଲୁ ହେ ଦୀପରୁଖା, ଏଥିର କାହାର ଦୋଷ ହେଲା ? ଦୀପରୁଖା କହିଲା ନେଉଳର ଦୋଷ । ଏଥିରେ ମଉନାବଙ୍ଗ ରାଗିଯାଇ କହିଲା ଭଣ, ନେଉଳର ଦୋଷ ହେଲା ? ମୋ ଦୀପରୁଖା ହୋଇ ଏମନ୍ତ କହୁଚୁ ! ଏଥିରେ ଘଣ୍ଡ୍ରୀବାହ୍ମଣୀ ଦୋଷୀ । ଏ ସେଉଠୁଁ କହିଲା ଦେଖୁଥାଅ ହୋ ଯାଇ, ତମଝିଅ ଆମକୁ ତୃତୀୟପହରର କଥା କହିଲା । ଏହି ପର ଚତୁର୍ଥପହର ରଜାଝିଅ ଆଉ ଗୋଟିଏ କଥା କହିଲା । ସେ କଥାଟି ଏହି—

## ଚାରି ସଙ୍ଗାତ କଥା ।

ଗୋଟିଏ ଦେଶରେ ରଜାପୁଅ, ସୁନାରିବଣିଆପୁଅ, ବଢ଼େଇପୁଅ, ତନ୍ତ୍ରପୁଅ ଏ ଚାରି ସଙ୍ଗାତ । ଏ ଚାରିଜଣ ବିଦେଶ କରି ବାହାରିଲେ ଯାଉ ଯାଉ ଗୋଟିଏ ବନସ୍ତରେ ରାତି ହେଲା, ସେଇଠି ରହିଲେ, ପହରକୁ ପହର ଜଣେ ଲେଖାଁ ଜଗି ବସିଲେ, ଆଉ ସମସ୍ତେ ଶୋଇଲେ । ପ୍ରଥମ ପହର ବଢ଼େଇର ପାଳି ପଡ଼ିଲା, ସେ ଜଗିଥାଏ, ଖଣ୍ଡିଏ କାଠରେ ଗୋଟିଏ କନ୍ୟାଟିଏ ଗଢ଼ିଲା, ଦ୍ୱିତୀୟ ପହରେ ସୁନାରିବଣିଆର ପାଳି, ସେ ସେ କନ୍ୟାଟିକି ଗୁଡ଼ିଏ ଅଳଙ୍କାର ଖଞ୍ଜାଇ-ଦେଲା । ତୃତୀୟ ପହର ତନ୍ତ୍ରପୁଅ ଜଗିଲା, ସେ କନ୍ୟାଟିକି ଲୁଗାପିନ୍ଧା-ଇଲା । ଚତୁର୍ଥପହରେ ରଜାପୁଅର ପାଳି ପଡ଼ିଲା, ସେ କନ୍ୟାଟିକୁ ଜୀବଦାନ ଦେଲା । ଏହିପରି ସମସ୍ତେ କହିଲେ, ରାତି ପାହିଲା, କନ୍ୟା-

ଝିକୁ ଦେଖି ସମସ୍ତେ ଲୋଭ କଲାଇଲେ । ଏହା ଶୁଣି ରଙ୍ଗାଝିଅ କହିଲା, କହନ୍ତୁ ଦେ ହାର ସେ କନ୍ୟାକୁ କଏ ନେବ ? ମଞ୍ଜୁନାବତୀ ବେକର ହାର କହିଲା ନେଲେ ନେବ ରଜାପୁଅ, ନଇଲେ ବଢ଼େଇ-ପୁଅ । ମଞ୍ଜୁନାବତୀ କହିଲା ଉଁ । ତୁ ମୋର ହୋଇ ଏଡ଼େ ଅନ୍ୟାୟ କଥା କହୁଚୁ ! ବଢ଼େଇପୁଅ, ରଜାପୁଅ କେମନ୍ତ ନେବେ ? ବଢ଼େ-ଇତ ଜନ୍ମଦାତା, ରଜାପୁଅତ ଜୀବନଦାତା, ଏ ଦୁହେଁ କିପରି ନେବେ ? ନେଲେ ନେବ ବଣିଅପୁଅ, ନଇଲେ ଚନ୍ଦ୍ରପୁଅ । ଏ କହିଲା ଶୁଣିଥାଇ ହୋ ଧାଇ ତମ ଝିଅ ଆମକୁ ଗୂଢ଼ ପଦରପାକ କଥା କହିଲେ । ସତ ପାହିଲା, ଏ ଗୃଢ଼ ଅପୂର୍ବ ତାଙ୍କ ସୂତ୍ରରେ (୧) ଚାଲିଗଲେ । ଏ ସଜା-ଝିଅ ରଜାଙ୍କ ପାଖକୁ ଗଲା, କହିଲା ତମ ଝିଅ ଆମକୁ କଥା କହୁଚନ୍ତି । ଧାଇର ଭରସା ହେଲା, ଧାଇ କହିଲା ହଁ କଥା କହୁଚନ୍ତି । ରଜା-କହିଲେ ଅଜ ବିଳମ୍ବ କାହିଁକି, ବିଭାଘର ହେଉ । ରଙ୍ଗାଝିଅ କହିଲା ହଉ ବିଭାଘର ହେବ ଯେ ଆଗେ ଆପଣଙ୍କ ବନ୍ଦଶାଳାରେ ଯେତେକ ବନ୍ଦୀ ହୋଇଚନ୍ତି ତାଙ୍କୁ ମୁକୁଳାଇ ଦିଅନ୍ତୁ । ରଜା ଅଜ୍ଞା ଦେଲେ ମୁକୁଳାଇବାକୁ, ସମସ୍ତେ ମୁକୁଳି ଗଲେ । ଏ ରଙ୍ଗାଝିଅର ଯେ ବର, ତାକୁ ଏ ସୂତ୍ରରେ ତାଙ୍କ କହିଲା ହେ ମୁଁ ମଞ୍ଜୁନାବତୀଙ୍କ କଥା କୁହା-ଇଚି, ରଜା ମତେତ ତାକୁ ବାହା କରିଦେବାକୁ ବସିଚନ୍ତି, ମୁଁ ତାକୁ ବିଭା ହେବି ନାହିଁ, ତେବେ ତାକୁ ବିଭା ହୁଅ, ମୁଁ ତମ ସାଙ୍ଗେ ଭଣ୍ଡାରି ହୋଇଯିବି । ସେହିପରି ସବୁ ହେଲା, ରଜାପୁଅ ମଞ୍ଜୁନାବତୀଙ୍କି ବିଭା ହେଲା, ବହୁତ ଦାନ ଯୌତୁକ ଦିନଲା, ଘରକୁ ଆସିଲା । ତା ଆଗ ଛୁରଯା ଭଣ୍ଡାରି ବେଶ ହୋଇ ତା ସାଙ୍ଗେ ସାଙ୍ଗେ ଥାଏ । ଦିନେ ବାଟରେ ଏ ହଠାତ୍ ଭଣ୍ଡାରି ବେଶ ଛାଡ଼ି ନିଜ ରୂପ ଧରି ରଜାପୁଅ ପାଖରେ ପହଞ୍ଚିଲା, ରଜାପୁଅ ଦେଖି କାବା ହୋଇଗଲା, କହିଲା

---

(୧) ଢଙ୍ଗ ପନ୍ତରେ, କୌଶଳରେ ।

ତେମେ କିପରି ଏଠାକୁ ଆସିଲ ? ଏ କହିଲା ତମ ବାନ୍ଧାଘର ଦେଖି-ବାକୁ ଆସିଥିଲି । ରଜାପୁଅଟ ଏ ସବୁ କିଛି ଜାଣେ ନା, କହିଲା ଏବେ ତ ମଜୁନାବଣୀକି ବିଭା ହୋଇ ଆସିଲି, ତମକୁ ଦଣ୍ଡବଧା ମାରିବାର ମୋର ଫାବିଲା । ଏ କହନ୍ତି ଚଟକଣା ଖାଇ ରହି ନାହିଁ ଯେ ଫେର୍ କହୁଚ ? ତେବେତ ମୋ ଦୋଷେ ବନ୍ଧଣରୁ ମୁକୁଳିଲି, ନହେଲେ ସେଇଠି ଥାନ୍ତି, ତେମେ କଣ ମଜୁନାବଣୀଠାରୁ କଥା କେଉଚ ? ରଜାଝିଅ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ସବୁ କହିଗଲା, ରଜା-ପୁଅ ଶୁଣି ବଡ଼ ଖୁସି ହେଲା । ଅସୁର ଗୁରୁଙ୍କି ବିଦା କରି ଦେଲେ, ରଜାପୁଅ ହି ଭାରିଯାଙ୍କୁ ନେଇ ସୁଖରେ ରହିଲା, ମୁଁ ଗଲିକୁ କଥା ନ କହିଲି । ମୋ କଥାଟି ସରିଲା ଇତ୍ୟାଦି ।





## ସୁନାଫୁଲ କଥା ।

ଗୋଟିଏ ମନ୍ତ୍ରୀଟିଏ, ତାର ସାତ ପୁଅ ସାତ ବୋହୂ, ସୁନାଫୁଲ ବୋଲି ଗୋଟିଏ ଝିଅ । ସେ ଝିଅ ସୁନାଫୁଲ ଫୁଟେ । ଭାଉଜମାନଙ୍କୁ ଦିନେକର ସୁନାଫୁଲ କହିଲା, ହେ, ମୁଁ ସୁନାଫୁଲ ଫୁଟିବି, ତେମେମାନେ କଣ କରିବ; ଘର ଝଖଡ଼ାଏ ଲିପିଆଣିବ, ଗାଡ଼ୁଟିଏ ଦେଖାଇବ, ମୁଁ ସେଥିରେ ବସିବି, ମୋ ଉପରେ ମାନ୍ଦ ଉଡ଼ାଇ ଦେବ, ହଳଦୀ ପାଣି ମୁଠିଏ ଛିଞ୍ଚି ଦେବ, କହିବ ଫୁଟ ଗୋ ସୁନାଫୁଲ ଫୁଟ । ଫୁଟି ସାରିଲାରୁ ସେହିପରି ହଳଦୀପାଣି ମୁଠିଏ ଛିଞ୍ଚି ଦେବ, କହିବ ଉଠ ଗୋ ସୁନାଫୁଲ ଉଠ । ଭାଉଜମାନେ ସେହିପରି କଲେ । ସୁନାଫୁଲ ଦିବ୍ୟସୁନ୍ଦର

ଫୁଲଗଛଟିଏ ହେଲା, ସେ ଗଛଯାକ ଫୁଲ କଢ଼ି ହୋଇ ପୂରିଲା । ସାତ ଭଉଣୀଯାକ ଗଲେ, ଡାଳପତ୍ର କଣ୍ଟା ଭାଙ୍ଗିଲେ ନାହିଁ, ସାତ-ଯାକ ପାଇଁ ସାତଟି, ସୁନାଫୁଲ ପାଇଁ ଗୋଟିଏ, ଅଠଟି ଫୁଲ ତୋଳିଲେ, ହଳଦୀ ପାଣି ମୁଠାଏ ଛିଞ୍ଚି ଦେଲେ, କହିଲେ ଉଠ ଗୋ ସୁନାଫୁଲ ଉଠ । ସୁନାଫୁଲ ଉଠି ବସିଲା । ସେ ସୁନା-ଫୁଲରୁ ସତ ଯାଁ ସାତଟି ଲଗାଇଲେ, ସୁନାଫୁଲକୁ ଗୋଟିଏ ଦେଲେ, ରହିଲେ । ଦିନକରେ ସାତ ଯା ଯାକ କହିଲେ ଆଜ ନଈକି ଗାଧୋଇ ଯିବା, ଘଣ୍ଟ ଟିକାଏ ଅଛି, ସମସ୍ତେ ଗାଧୋଇବାକୁ ଗଲେ । ସମସ୍ତେ ଗାଧୋଇ ଆଇଲେ, ସାନବୋହୂ ଘଣ୍ଟ ପାଣି ଯାଉଛି ବୋଲି ଧଡ଼ପଡ଼ ହୋଇ ଗାଧୋଇ ଚାଲି ଆସିଲା ବେଳକୁ, ତା ମୁଣ୍ଡରୁ ସୁନା-ଫୁଲଟି ଖସି ପଡ଼ିଲା କେତେବେଳେ, ସେ ଆଉ ଜାଣେ ନାହିଁ । ରଜାଙ୍କ ହାତୀ ପାଣି ପିଇବାକୁ ଆସିଥିଲା ନଈକି, ପାଣି ପିଉଁ ପିଉଁ ସେ ସୁନା—ଫୁଲଟିକି ଦେଖିଲା, ତାକୁ ନେଇକରି ଶୁଣ୍ଢରେ ଧରିଥାଏ; ଆଉ ଖାଇଲା ନାହିଁ କି ପିଇଲା ନାହିଁ, ସବୁବେଳେ ଝୁରି ହେଉଥାଏ । ଝୁରି ଝୁରି ହାତୀର କଣ୍ଠା ରହିଲା । ଦିନକରେ ରଜା କହିଲେ ହାତୀଟି କାହିଁକି ଜମା ଖାଉ ନାହିଁ ଝଡ଼ି ଗଲାଣି, ଏହା କହି ତାକୁ ଅଣାଇଲେ ଆଉଁସି ଆଉଁସି ହାତୀ ରଜାଙ୍କ ହାତରେ ସୁନାଫୁଲଟିକି ପକାଇଦେଲା । ରଜା ଦେଖି ବଡ଼ ଆଶ୍ଚର୍ଯ୍ୟ ହେଲେ, ମନ୍ତ୍ରୀଙ୍କି କହିଲେ ମନ୍ତ୍ରୀ, ଏ ଫୁଲ କୋଉଠୁ ଆସିଲା, ତେମେ ଯେବେ ଏ ଫୁଲରୁ କାଲିକି ଭିତରେ ଦେବ ତ ଦେବ, ନଇଲେ ତମ ବଂଶ ରହିବ ନାହିଁ । ମନ୍ତ୍ରୀ ବଡ଼ ଭାବନାରେ ପଡ଼ିଲା, କହିଲା ମୁଁ ଏବେ ସୁନାଫୁଲ ଭିତରେ କୋଉଠୁ ଆଣିବି । ବ୍ୟସ୍ତ ହୋଇ ଘରକୁ ଗଲା, ଖାଇଲା ନାହିଁ ପିଇଲା ନାହିଁ, ଗୋଟିଏ ଘରେ ଭାବନାରେ ଶୋଇଲା । ପୁଅମାନେ ବୋହୂମାନେ ଡାକିବାକୁ ଗଲେ, ଜମା ଶୁଣିଲା ନାହିଁ କି କଥା କହିଲା ନାହିଁ । ସଞ୍ଜ ଶେଷରେ ସୁନା-ଫୁଲ ଡାକିଲା । ଏ କହିଲା ଆଜ ଖାଇଲେ କଣ ହେବ, କାଲିକି

ବଣଯାକର ମୁଣ୍ଡ କଟା ହେବ । ସୁନାଫୁଲ କହିଲା ଏମନ୍ତ କଥା କାହିଁକି କହୁଛ ବାପା ? ମନ୍ତ୍ରୀ କହିଲା ରଜାର ଅନୁଜ୍ଞାମଣା, ହୁକୁମ କରଚନ୍ତି ମୁଁ କାଲିକି ସୁନାଫୁଲ ଭରେ ଦେବି, ନଇଲେ ସବଂଶରେ ମରିବି ! ସୁନାଫୁଲ କହିଲା ଏହି ଗୁରୁକଥା ପାଇଁ ଏତେ ଭାବନା ! ଭରେ କାହିଁକି, ସାତଭାର ନେବେ । ମନ୍ତ୍ରୀ ଶୁଣି ଟିକିଏ ଆଶ୍ୱସ୍ତ ହେଲା । ସମସ୍ତେ ଖାଇପିଇ ସାରିଲେ, ସୁନାଫୁଲ କଣ କଲା, ଭାଉଜ-ମାନଙ୍କୁ ଡାକି ନେଇ ଗୋଟିଏ ଘର ଲିପାଇ ଆଣିଲା । ସେହି ଘରେ ତାକୁ ପୋତିଦେଲେ, ହଳଦିପାଣି ଛିଞ୍ଚିଦେଲେ, କହିଲେ ଫୁଟ ଗୋ ସୁନାଫୁଲ ଫୁଟ । ସେ ଦିନ ବହୁତ ଫୁଲ ଫୁଟିଲା, ସବୁଯାକ ଫୁଲ ତୋଳି ଗଦା କଲେ, ଶେଷକୁ ହଳଦି ପାଣି ମୁଠାଏ ଛିଞ୍ଚିଦେଲେ, କହିଲେ ଉଠ ଗୋ ସୁନାଫୁଲ ଉଠ; ସୁନାଫୁଲ ଉଠି ବସିଲା । ସବୁ ଫୁଲଯାକ ଭାର ୨ କରି ସଜାଡ଼ି ଦେଲେ, ସାତଭାର ଫୁଲ ହେଲା, ତାକୁନେଇ ମନ୍ତ୍ରୀ ରଜାଙ୍କ ଦୁଆରେ ଥୋଇଦେଲା । ରଜା ଦେଖି ବଡ଼ ଖୁସି ହେଲେ, ବୁଝି ୨ ବୁଝିଲେ ଯେ ମନ୍ତ୍ରୀଝିଅ ନିଜେ ସୁନାଫୁଲ ଫୁଟେ । ରଜା କହିଲେ ମନ୍ତ୍ରୀ ଆମେ ତମ ଝିଅକୁ ବିଭା ହେବା । ମନ୍ତ୍ରୀ କହିଲା ଆପଣଙ୍କୁ ଯେବେ ସୁନ୍ଦର ଦିଶିଲା ତେବେ ବିଭାଦର ହଉ । ରଜା ମନ୍ତ୍ରୀଝିଅ ସୁନାଫୁଲକୁ ବିଭା ହେଲେ । ସେ ରଜାଙ୍କର ଆଉ ସାତ ରାଣୀ ଥାନ୍ତି, ମନ୍ତ୍ରୀଝିଅକୁ ବିଭା ହେବାରୁ ସେମାନଙ୍କୁ ଆଉ ରଜା ଦେଖି ପାରିଲେ ନାହିଁ ଏଇୟାକୁ ଭଲ ଦେଖି ପାରିଲେ । ଦିନକର ରଜା ପାରିଧିକି ଗଲେ, ମନ୍ତ୍ରୀଝିଅକୁ କହିଗଲେ ତମ ସଉ-ତୁଣୀମାନେ ଯେବେ ଫୁଲ ଫୁଟିବାକୁ ଲଗାଇବେ, ତେବେ କେବେ ଫୁଟିବ ନାହିଁ, ତମକୁ ବାଦରେ ମାରି ପକାଇବେଟି । ମନ୍ତ୍ରୀ ଝିଅ ନାହିଁ କଲା । ରଜା ଯୋଉଠୁ ଗଲେ ବାହାରି, ଏ ସାତ ସଉତୁଣୀଯାକ ଆସି, ଯା ସଙ୍ଗେ ଲଗାଇଲେ ତମେ କେମନ୍ତ ସୁନାଫୁଲ ଫୁଟ ଅଛ ଟିକିଏ ଫୁଟିବଟି, ଆମେ ଦେଖିବା, ଏହା କହି ଯା ସଙ୍ଗେ ଏକ ପିଦ୍

ଲଗାଇଲେ, ଭାଉ ଘାଣ ନାସୁମ ପକାଇଲେ । ଏ କହିଲା ହଉ ଫୁଟୁଛ, ତେବେ ଯେତେଜଣ ସେତିକଠି ତୋଳିବ ଆଉ କଢ଼ ଛୁଣ୍ଡାଇବ ନାହିଁ କି ଡାଳ ଭାଙ୍ଗିବ ନାହିଁ । ଏହା କହିଲା, ଗୋଟିଏ ଘରଟିଏ ଲିପାପୋଛା କରାଇ ସେହିଘର ଫୁଲ ଫୁଟିଲା; ଏ ସବୁ ବାଦରେ ଫୁଲକଢ଼ ଛୁଣ୍ଡାଇ ପକାଇଲେ, ଡାଳ ସବୁଭାଙ୍ଗିଭାଙ୍ଗି ନଈରେ ପକାଇଦେଲେ । ଏ ଡାଳ ସବୁ ଭାସି ଯାଇ ସେପାରି ଘାଟରେ ରଜା ଗାଧୋଉଥିଲେ ତାଙ୍କର ହାତରେ ଲାଗିଲା । ରଜା ତାକୁ ଦେଖି ବଡ଼ ବେସ୍ତ ହେଲେ, କହିଲେ ମୁଁ ଏତେକର କହି ଆସିଥିଲି, ଏ ଫୁଟିଲା । ସଉତୁଣୀମାନେ ବାଦରେ ଡାଳଫାଳ ଭାଙ୍ଗି ଫିଙ୍ଗି ଦେଇଛନ୍ତି । ରଜା ସେହିଲାଗେ ବାହୁଡ଼ି ଆସିଲେ ସେଠାରୁ ଘରକୁ । ଘରେ ଆସି ଦେଖନ୍ତି ଯେ ସୁନାଫୁଲ ନାହିଁ । ଆଉ ଭାରିଯାମାନଙ୍କୁ ପଚାରିବାରେ ସେମାନେ ସମସ୍ତେ କହିଲେ ଆମେ ଦେଖିନାହୁଁ । ରଜା ବଡ଼ ମନଦୁଃଖରେ ସେ ଡାଳପତ୍ରଗୁଡ଼ାକ ନେଇ ଗୋଟିଏ ଅରଣ୍ୟରେ ଯାଇ କାନ୍ଦିଲେ । କାନ୍ଦୁଛନ୍ତି ବସି, ରାତ୍ରି ଅଧ ହେଲାଣି, ଈଶ୍ୱର ପାର୍ବତୀ ଭିଡ଼ି ଯାଉଥିଲେ; କାନ୍ଦଣା ଶୁଣିଲେ । ପାର୍ବତୀ କହିଲେ ଆଜ କାହିଁକି 'ପୃଥିବୀଟା ଭାରି' ଲାଗୁଚି, ଏ ଅରଣ୍ୟରେ କିଏ ଗୋଟିଏ ଶୋକ କଲାପରି ଶୁଭୁଚି, ଚାଲ ଯିବା ଦେଖିବା । ଈଶ୍ୱର କହିଲେ ଆମର ସେଥିରେ କଣ ଅଛି ? ପାର୍ବତୀ କହିଲେ ଆମେ ଅଉ ତେବେ ସୃଷ୍ଟି ଉଥଇଛୁ କାହିଁକି କଷ୍ଟର ବୁଝିବା ନାହିଁ, ଅଉ ଆମର ସୃଷ୍ଟିରେ ଅଛି କଣ ? ଈଶ୍ୱର କହିଲେ ହଉ ତେବେ ଦେଖି ଆସିବା ଚାଲ । ଈଶ୍ୱର ପାର୍ବତୀ ଦୁହେଁଯାକ ଗଲେ, ରଜାଙ୍କୁ ପଚାରିଲେ ତୁ କିଏ ଭୂତ କି ପ୍ରେତ, ଏଠି ବସି କାନ୍ଦୁଚୁ କାହିଁକି ? ରଜା କହିଲେ ମୁଁ ଏ ଦେଶର ରଜା; ଏମନ୍ତି ମୋ ସାନଭାରିଯାକୁ ସଉତୁଣୀମାନେ ମାରି ପକାଇଛନ୍ତି ମୁଁ ତାକୁ ନେଇ ଏଠାରେ କାନ୍ଦୁଚି । ଈଶ୍ୱର ପାର୍ବତୀଙ୍କର ଦୟା ହେଲା, କହିଲେ ତେଣିକି

ମୁହଁରୁଖ। ରଜା ଯେଣିକି ମୁହଁ ଫେରାଇଲେ, ଈଶ୍ୱର ପାର୍ବତୀ ଫୁଲପାଣି କରି ତିନିମୁଠା ଛିଞ୍ଚିଦେଲେ ଯେ ସୁନାଫୁଲ ଜୀଇ ଉଠିଲା। ଈଶ୍ୱର ପାର୍ବତୀ ହୁଟେଇ ଗଲେ। ରଜା ସୁନାଫୁଲକୁ ଘେନି ଘରକୁ ଆସିଲେ, ବଡ଼ ସାତସଣୀକି ଖଣି ଖୋଳାଇ ତହିଁରେ ପକାଇ-ଦେଲେ, ତଳକଣ୍ଟା ଉପରକଣ୍ଟା ଗୁଞ୍ଜିଦେଲେ। ସୁନାଫୁଲକୁ ନେଇ ଆନନ୍ଦରେ ଘରଦୁଆର କଲେ, ମୁଁ ଗଲ୍ପକୁ କଥା ନ କହିଲେ। ମୋ କଥାଟି ସରିଲା ଇତ୍ୟାଦି।

---

## ପାନସୋରି କଥା।

ଗୋଟିଏ ସାଧବଟିଏ ଯେ ତାର ସାତପୁଅ ସାତବୋହୂ। ସବୁ ସାନ ବୋହୂଟିକୁ କେହି ଦେଖି ପାରନ୍ତି ନାହିଁ। ସାତ ଯା ଯାକ ଗର୍ଭହେଲେ, ବଡ଼ ଛ ଯାଆଙ୍କର ତାହାର ପୁଅ ହେଲା ତାହାରଝିଅ ହେଲା, ସାନ ଯାର କିଛି ହୋଇ ନ ଥାଏ। ଏ ଘରର କାମଦାମ ସବୁ କରୁଥାଏ। ଯେଉଁଦିନ କଷ୍ଟ ପାଇଲା, ଶାଶୁକୁ କହିଲା, ସାନ୍ତାଣି ମୋହ ଦେହ କଣ ହେଉଚି। ଶାଶୁ କହିଲା ଯା ଆଗେ ପାଣି ହେଉରକା ଆଣି ସାର ପଛେ କଷ୍ଟ ପାଇବୁ, ଏ ଆଉ କଣ କରିବ? ସବୁକାମକରି ସାରିଲା, ଫେର୍ ଶାଶୁକୁ କହିଲା। ଶାଶୁ କଣ କଲା ନା ଅରଟଖଣ୍ଡିଏ ହାତରେ ଦେଲା। ଗୋଟାଏ ବରଣା (୧) ଦେଲା, କହିଲା ସୂତାକୁ ସୂତା

---

(୧) ପରସ୍ପାର ତୂଳାର ଯନ୍ତ୍ରି ଯହିଁରୁ ସୂତା କଟାଯାଏ।

କାନ୍ଦିକାଟି ଯାଏ ଯୋଉଠି ସବୁବେଳେଠି ଜନ୍ମକରିବୁ, ପୁଅଟିଏ ହେବଟିଲ ଅଣିବୁ ଝିଅ ହେଲେ ଫୋପାଡ଼ିଦେଇ ଆସିବୁ ଏ ସେହିପରି ସୁତା କାନ୍ଦି ଗଲା ବାହୁଯାଇ, ଯାଇଁ ଯାଇଁ ଗୋଟାଏ ପାନବରଜ ପାଖେ ବରଣାଟି ସହିଲା ସେଇଠି ଜନ୍ମକଲା, ଝିଅଟିଏ ହେଲା । ଶାଶୁର କହିବା ଝିଅ ହେଲେ ଫୋପାଡ଼ି ଦେଇ ଆସିବୁ, ଆଉ ନେଇକରି ଯିବ କେମନ୍ତ ? ଝିଅଟିକି କଣକଲା ନା ପାନବରଜ ଭିତରେ ପାନ ଗୁଡ଼ାଏ ପାରି ଦେଲା ତା ଉପରେ ଶୁଆଇ ଦେଲା, ତା ପାଖରେ ବସି ଗୁଡ଼ାଏ କାନ୍ଦିଲା, ଘରକୁ ଆସିଲା । ଆରଦେଶ ରଜା । ପାରିଧିକି ଆସିଥିଲେ । ଏ ଝିଅଟି ପାନବ-ରଜରେ କାନ୍ଦୁଛି ଶୁଣିଲେ, କହିଲେ କେହିତ କୁଆଡ଼େ ନାହିଁ, ପିଲା-ଟିଏ କୋଉଠି କାନ୍ଦୁଛି ଦେଖିବ, ଖୋଜିଲ । ଚାକରମାନେ ଗଲେ ଖୋଜିଲେ, ପାନବରଜ ଫିଟାଇ ଦେଖିଲା ବେଳକୁ ଝିଅଟିଏ କାନ୍ଦୁଛି ତାକୁ ନେଇକରି ଗଲେ ରଜାଙ୍କ ପାଖକୁ । ରଜା କହିଲେ ତାକୁ ନିଅ ଆମଘରକୁ, ଆମେ ତାକୁ ଝିଅ କରିବା । ନେଇକରି ଗଲେ ଘରକୁ, ରାଣୀଙ୍କି ଦେଲେ, କହିଲେ ଏଇଟିକି ପାଳ, ଆମର ଝିଅ କରିବା । ରାଣୀ ପାଳିଲେ, ଝିଅଠାରୁ ଅଧିକସ୍ନେହରେ ବଢ଼ାଇଲେ । ତା ନାଆଁଟି ଦେଇଥାନ୍ତି ପାନସୋଷି । ପାନସୋଷିକି ଦଶ ବାରବରଷ ହେଲା । ବଡ଼ ହେଲା, ବରଘର ଲଗାଇଲେ, ଆରଦେଶ ରଜାପୁଅକୁ ବିଭା କରିଦେବେ । ପାନସୋଷି ଖୁବ ସୁନ୍ଦରୀ. ଆରଦେଶ ରଜାପୁଅ ଆଉ ତାକୁ ଦେଖି ଦାଣ୍ଡକୁ ବାହାରିଲା ନାହିଁ, ସବୁବେଳେ ତା ପାଖରେ ଥାଏ । ପ୍ରଜାମାନେ କହିଲେ ରଜାପୁଅତ ଘରୁ ବାହାରିଲେ ନାହିଁ, କିଛି ବୁଝିଲେ ନାହିଁ, କିପରି ଚଳିବ ? ଏହିପରି ଯୋଉଠି, ସମସ୍ତେ କହିଲେ, ରଜାପୁଅ କଣକଲା, ଧନକର ଘରରୁ ଉଠି ଘୋଡ଼ାରେ ଚଢ଼ି କୁଆଡ଼େ ଗଲା ବାହାରି । ଯାଇଁ ଯାଇଁ ଆରଦେଶ ରଜାଗାଁରେ ପହଞ୍ଚିଲା । ସେ ଦେଶ ରଜାଝିଅକୁ ବର ମିଳୁ ନ ଥାଏ ଯେ ସେ ଧନାଗାର, କଳାଗାର, ନାଲିଗାର, ନେଳୀଗାର,

ହଳଦିଅଗାର କାଛି କସିଣ । ଏ ରଜାପୁଅ ଅଉ ଜାଣେ ନା, ଗାର ଡେଇଁ ଦେଇ ଗଲା ବାହାର । ଏ ରଜାଝିଅର ଧାଇ ତାକୁ ଫେରାଇ ଆଣିଲା, କହିଲା ଆମ ଝିଅଙ୍କର ନିୟମ ଅଛି, ଯେ ଗାରଡେଇଁବ, ସେ ତାଙ୍କୁ ବାହା ହେବ. ତେବେ ଫେରିଆସ ବାହାହେବ । ଧାଇ ଯାଇ ରଜାଙ୍କୁ କହିଲା ତମଲୋଖି (୧) ଜୋଇଁ ମିଳିଲାଣି ବାହାଘର କର । ରଜା ସବୁ ଯୋଗାଡ଼ କଲେ, ବାହାଘର ହେଲା । ସେ ରଜାଝିଅର ନାମ ଭାଗବତୀ । ଭାଗବତୀ ଆଉ ଏ ରଜାପୁଅ ବିଭାହୋଇ ସେଇଠି ରହିଲେ । କେତେଦିନ ଗଲା ବାହାର, ଭାଗବତୀ ଏ ରଜାପୁଅପାଇଁ ପାନ ଭାଙ୍ଗିଦିଏ, ଲୁଗା କୁଞ୍ଚାଇ ଦିଏ, ଭାତ ବାଢ଼ିଦିଏ, ଗଡ଼ାପେଡ଼ି ସଜାଡ଼ି ଦିଏ, ଘର ଓଳାଇଦିଏ, ଏ ରଜାପୁଅର ମନକୁ ଆଉ ଆସେ ନାହିଁ । ସବୁବେଳେ ପାନସୋଷିଙ୍କ ବାହୁନି କରି କହେ, କି ପାନ ଭାଙ୍ଗିଚୁ ଲୋ ତାସ, ନୁହେ ମୋ ପାନସୋଷି ପରି. କି ଠାଆ (୨) ଭାଙ୍ଗିଚୁ ଲୋ ତାସ, ନୁହେ ମୋ ପାନସୋଷି ପରି, କି ଭାତ ବାଢ଼ିଚୁ ଲୋ ତାସ, ନୁହେ ମୋ ପାନସୋଷି ପରି, କି ଲୁଗା କୁଞ୍ଚିଚୁ ଲୋ ତାସ, ନୁହେ ମୋ ପାନସୋଷି ପରି, ଏହିପରି ସବୁଦିନେ ବାହୁନେ । ଭାଗବତୀ ଅଉ ଏ ରଜାପୁଅ ମନକୁ ଆସେ ନାହିଁ । ଭାଗବତୀ କହିଲା ଯାଙ୍କର ଗୋଟାଏ ପାନସୋଷି । ଏ କେଡ଼େ ସୁନ୍ଦର ଯେ ଏମନ୍ତ, ମତେ ସବୁବେଳେ ଖୁଣିଲେ । ମନକଥା ମନରେ ଥାଏ, ଦିନେ ରଜାପୁଅକୁ ପଚାରିଲା, ହେ ତମଗାଁରେ କଣ ମିଳେ ନାହିଁ । ଏ କହିଲା ଆମର ରଜାବାଇଜ, ଅପୂରୁବ କଣ ? ସବୁ ମିଳେ ଯେ ଏକା ପରୀ ତାଳପତ୍ର ଝିଲୀଖା ମିଳେ ନାହିଁ । ଭାଗବତୀ କଣ କଲା, ଗୁରୁ ପାଞ୍ଚ ଟଙ୍କାର

---

୧ । ତମ ସମାନ

୨ । ଠାଆ — ଭୂମି ଉପରେ ମଣ୍ଡଳ ହାବ ଚିତ୍ରିତ ପଦ୍ମଫୁଲ ଇତ୍ୟାଦି ଅଙ୍କିତ ସ୍ଥାନ ଏହା ଉପରେ ଭୋଜନଥାଳୀ ରଖାଯାଏ ।

ପଶୁ ଚାଲଚଣକୁ ଶିଖି ଶଙ୍ଖା କିଣି ଆଣିଲା, ଜ୍ଞାନଦେୟୀ ମାଲୁଣୀକି ଡାକି ଆଣିଲା. ମନପବନ ଡଙ୍ଗା ଖଣ୍ଡେ ଆଣିଲା, ମାଲୁଣୀକି କହିଲା ତୁ ଆର ଦେଶ ରଜାଙ୍କୁ ଏ ସବୁ ନେଇକରି ଯିବୁ, ତାଙ୍କର ବନ୍ଦୀ କରିବୁ । ସମସ୍ତେ ଆସିବେ ନେବାକୁ, ତୁ କହିବୁ ଆଗେ ରାଣୀ ଆସି ନେଲେ ମୁଁ ପଛେ ସମସ୍ତଙ୍କୁ ଦେବି । ଯେଉଁଠୁ ରାଣୀ ଆସି ଡଙ୍ଗା ଉପରେ ବସି କିଣିବାକୁ ଧରିବ, ତୁ ରାଣୀଙ୍କି ନେଇ ଚାଲିଆସିବୁ । ଜ୍ଞାନଦେୟୀ ମାଲୁଣୀ ଯାଇ ସେହିପରି କହିଲା, ସମସ୍ତେ ଆସି ପାନସୋଖିଙ୍କି ଡାକିଲେ, ଆସ ତୁମେ ଆଗ ନେଲେ ସମସ୍ତେ ପଛେ ନେବେ । ପାନସୋଖି ଯାଇ ଶାଶୁ ପାଖକୁ କହିଲା ମୁଁ କିଣିବାକୁ ଯାଉଛି । ଶାଶୁ ଶଶୁରଙ୍କୁ ଆଉ କିମ୍ପା ବଶୁନାହିଁ ପୁଅକୁ ଝୁରି । ପାନସୋଖି ଯେଉଁଠୁ କହିଲା କିଣିବାକୁ ଯିବି, ଶାଶୁ କହିଲା ହଉ ଯା । ପାନସୋଖି ଯାଇ ଡଙ୍ଗା ଉପରେ ବସିଲାକ୍ଷଣି, ମାଲୁଣୀ କହିଲା ଯେବେ ସତ୍ୟଯୁଗର ମନପବନ ଡଙ୍ଗା ହୋଇଥିବୁ, ତେବେ ଯାଙ୍କୁ ନେଇ ପବନ ବେଗରେ ଚାଲି ଯିବୁ । ଏହା କହିଲାକ୍ଷଣି ଡଙ୍ଗା ଚାଲିଲା ଯେ ଆସି ତାରାବତୀ ରାଜ୍ୟରେ ପହଞ୍ଚିଲା । ତାରାବତୀ ପାନସୋଖିକି ନେଇ ଗୋଟା ଘରେ ଲୁଚେଇ କରି ରଖାଇଲା । ତହିଁ ଆରଦିନ ପାନସୋଖି ହାତରୁ ଘର ଓଳାଇଲା, ପାଣି ଭଙ୍ଗାଇଲା, ଭାତ ବଢ଼ାଇଲା, ଲୁଗା କୁଟେଇଲା, ସବୁ କରାଇଲା, ପାନସୋଖିକି ସେଅଡ଼ ଘରେ ଗୁଡ଼ିଦେଇ ଆସିଲା । ରଜା ପୁଅ ସେଦିନ ସବୁ ଦେଖିଲା, ଶୁଣିଲା ନାହିଁ, ଭାତ ଖାଇଲା, ଗଲା ବାହାରି, ତାରାବତୀ ଭାବିଲା ହଁ ଯାଙ୍କୁ ସବୁବେଳେ ଝୁରିଲେ, ମତେ ଦେଖି ପାରିଲେ ନାହିଁ । ଏହା ମନରେ ପାଞ୍ଚି ପାନସୋଖିକି ବନସ୍ତକୁ ଡାକିନେଲା, ହାଣି ପକାଇ ଆସିଲା । ସେ ବନସ୍ତରେ କଣ ହେଲା, ପାନ-ସୋଖିର ପେଟ ପୋଖରୀ ହେଲା, ପିଠି ପଥର ହେଲା, ମୁଣ୍ଡ ମଣ୍ଡପ ହେଲା, ହାତ ଫୁଲଗଛ ହେଲା, ଗୋଡ଼ କଦଳୀଗଛ ହେଲା, ଆଖିଦୋଟି ଶୁଆ ମାଛି ହେଲେ, ଏହିପରି ହୋଇଥାଏ । ଗାଈଜଗା ପିଲାଏ ଏଠିକୁ

ଫୁଲ ନିଅନ୍ତି ଖେଳନ୍ତି । ଦିନକର ରଜାଙ୍କର ମାଳୀ, ଫୁଲ ଖୋଜି୨ ଆଜ କୋଉଠି ଫୁଲ ପାଇଲା ନାହିଁ, ଦେଖିଲା ଗାଈଜଗା ପିଲାଏ ଫୁଲ ନେଇ ଖେଳୁଛନ୍ତି । ମାଳୀ କହିଲା ଅରେ ପିଲାଏ ତେମେ କୋଉଠୁ ଏ ଫୁଲ ଆଣିଲ, ମୁଁ ଏତେ ସକଳ ଖୋଜୁଛି ପାଉନାହିଁ । ସେମାନେ କହିଲେ ଜେଉଁଠି ସେ ବନସ୍ତରେ କେତେ ଫୁଲ ଫୁଟିଛି ପାଉନାହଁ ? ମାଳୀ ଫୁଲ ଆଣିବାକୁ ଗଲା । ଆଗ ଦୋଇଁ ପଥର ଉପରେ ଠିଆ ହେଲାକ୍ଷଣି, ପାନସୋଖା କହିଲା, 'ଧୀରେ ହୋଇ ଠିଆହୁଅ ହେ ମାଳୀ, ମୋ ପିଠିକି କାଟିବଟି, ମୁଁ ଯେଉଁ ସାଆନ୍ତ ହାତ ଧରିଥିଲି ସେ ଅତି ସୁକୁମାର ଟି' । ମାଳୀ ଏଣିକି ତେଣିକି ଅନାଇଲା ଦେଖିଲା କେହି ନାହିଁ । ସେ ଖଣ୍ଡରେ ପଶି ଗୋଡ଼ ଧୋଇଲା ବେଳକୁ ଫେର ପାନସୋଖା କହିଲା, 'ଧୀରେ୨ ଗୋଡ଼ ଧୁଅ ହେ ମାଳୀ ମୋ ପେଟକୁ କାଟିବ ଟି, ମୁଁ ଯେଉଁ ସାଆନ୍ତ ହାତ ଧରିଥିଲି ସେ ଅତି ସୁକୁମାର ଟି' । କଦଳୀଗଛ ପତର ତୋଳିଲା ବେଳକୁ ସେହିପରି କହିଲା, 'ଅରେ ମାଳୀଭାଇ ଧୀରେ ତୋଳବୁଟି; ମୋ ଗୋଡ଼କୁ କାଟିବଟି, ଯେଉଁ ସାଆନ୍ତର ହାତ ଧରିଥିଲି ସେ ଅତି ସୁକୁମାର ଟି । ମାଳୀ ସେଠାରୁ ଗଲା, ଫୁଲ ତୋଳିଲା ବେଳକୁ କହିଲା, 'ଅରେ ମାଳୀଭାଇ ଧୀରେ ତୋଳିବୁ ଟି ମୋ ହାତକୁ କାଟିବ ଟି, ମୁଁ ଯେଉଁ ସାଆନ୍ତ ହାତ ଧରିଥିଲି ସେ ଅତି ସୁକୁମାର ଟି' । ମଣ୍ଡପ ଉପରେ ଚଢ଼ିଲା-ବେଳକୁ କହିଲା, 'ଅରେ ମାଳୀଭାଇ ଧୀରେ ଚଢ଼ିବୁଟି, ମୋ ମୁଣ୍ଡକୁ କାଟିବଟି ଯେଉଁ ସାଆନ୍ତର ହାତ ଧରିଥିଲି ସେ ଅତି ସୁକୁମାର ଟି' । ସେମନ୍ତ ଶୁଆସାରିଙ୍କି ଧରିଲା ବେଳକୁ ଶୁଆସାରୀ କହିଲେ 'ଧୀରେ ଧରିବଟି, ଅହେ ମାଳୀଭାଇ ମୋ ଅଙ୍ଗକୁ କାଟିବ ଟି, ଯେଉଁ ସାଆ-ନ୍ତର ହାତ ଧରିଥିଲି ସେ ଅତି ସୁକୁମାର ଟି' । ମାଳୀ ଗଲା ରଜାଙ୍କ ଆଗରେ କହିଲା ମଣିମା, ଗୋଟିଏ କଥା କହିବାକୁ ଭାରି ଭୟ ଲାଗୁଛି । ରଜା କହିଲେ କଣ କହ, ଭୟ କାହିଁକି କରୁଛୁ । ମାଳୀ

ସବୁ କହଗଲା । ରଜା କହଲେ ତାଇଲୁ ଦେଖିବା । ମାଳୀ ଅଉ ରଜା, ଦ୍ୱହେଁ ଯକ ସେ ବନସ୍ତକୁ ଗଲେ, ରଜା ଛୁଉ଼ା ହେବଲେ ମାଳୀ ସେହପର ପଥର ଉପରେ ଛୁଉ଼ ଦେଲା, ପାଣିରେ ଗୋଡ଼ ଧୋଇଲା, ଅଉ ସବୁ କଲା । ପାନସୋଗ୍ଧ ଅଗରୁ ସବ କହଲା । ରଜା ଶୁଣିଲେ ଜାଣି ପାରଲେ ଭାଗ୍ୟବନ୍ତ ପାନସୋଗ୍ଧକ ଏଠାରେ ହାଣିଚ । ମାଲୀକି ପଠାଇ ଦେଲେ, କହଲେ ମୁଁ ଏଠାରେ ଥିବାର ତୁ ଅଉ କାହା ଆଗେ କହବୁ ନାହିଁ, ଯେବେ କହବୁ କାହାଆଗେ ତୋ ବଂଶକୁ ଶୂଳସ୍ଥାପଦାରେ ଶୂଳଦେବ । ମାଳୀ ଘରକୁ ଥଇଲା ବହାର. କାହା ଆଗେ କଛୁ କହଲା ନାହିଁ । ରଜା ସେହ ପୋଖରୀକୂଳେ ବସିଥାନ୍ତି । କାହିଁ ରାତ ଅଧ ହେଲାଣି, ଈଶ୍ୱର ପାର୍ବତୀ ଆକାଶରେ ବୁଲି ଯାଉଚନ୍ତି, ପାର୍ବତୀ କହଲେ ରହଥାଅ ଏବେ ଗୋଟଏ କାନ୍ଦୁଚ ଏତେବେଳେ, ଈଶ୍ୱର କହଲେ ଶୂଲଟେହା ଅମର ସେଥିରେ ଲଣ-ଥିଚୁ ? ପାର୍ବତୀ କହଲେ ଅଜି ଅମେ ସୃଷ୍ଟି କାହିଁକ ଉଅଇଚୁ ? ଲୋକଙ୍କ ଭଲମନ୍ଦ କଏ ବୁଝିବ ? ଈଶ୍ୱର ପାର୍ବତୀ ଦ୍ୱହେଁଯାକ ବନସ୍ତ ଭତରକୁ ଗଲେ ରଜାପାଖକୁ, ପଚ୍ଛରଲେ ତୁ କଏ, ଭୂତ କ ପ୍ରେତ କ ଡ଼ାହାଣୀ କ ଚଉଗୁଣୀ ତୁ କଏ ? ରଜା କହଲେ ମୁଁ କେହ ନୁହେଁ ଅରଦେଶ ରଜାପୁଅ, ଏପର ପାନସୋଗ୍ଧକ ଭେଟ ହୋଇଥିଲ ଅଉ ସବୁ କଥା କହଗଲେ । ଈଶ୍ୱର ପାର୍ବତୀ କହଲେ ହଉ ତୁ ଟେଣିକ ମୁହଁ ବୁଲା, ରଜା ଟେଣିକ ମୁହଁ ବୁଲାଇଲାରୁ ଫୁଲପାଣି କର ତିନ ମୁଠା ଛିଞ୍ଚଦେଲେ ଯେ ପାନସୋଗ୍ଧ ଜୀଇ ଉଠିଲା । ଈଶ୍ୱର ପାର୍ବତୀ ଉଭେଇ ଗଲେ । ଏ ରଜାପୁଅ ପାନ-ସୋଗ୍ଧକ ଘେନ ଥସିଲା ବାହାର ଆପଣା ରଜ୍ୟକୁ, ଭାଗ୍ୟବନ୍ତକ ଛାଡ଼ଦେଇ ଅସିଲା । ପାନସୋଗ୍ଧକ ନେଇ ଘରଦ୍ୱାର କଲା, ସୁଖରେ ରହଲା, ମୁଁ ଗଲାକୁ କଥା କହଲା ନାହିଁ । ମୋ କଥାଟି ସରିଲା ଇତ୍ୟାଦ ।





ଗୋଟିଏ ଦେଶରେ ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ, କଟୁଆଳ-
ପୁଅ ଏ ଚାରି ସଙ୍ଗାତ । ଦିନକର ଚାରିହେଁଯାକ ବିଚାର କଲେ
ବିଦେଶ କରିଯିବା, ଗୋଟିଏ୬ ଘୋଡ଼ା ଚଢ଼ିଲେ ଗଲେ । ଯାଉ୬
ଗୋଟାଏ ଅପୁରୁଣୀ ଦୁଆରେ ସନ୍ଧ ହେଲା । ଅପୁରୁଣୀକି କହିଲେ
ମାଉସୀ ଟିକିଏ ଘର ଯେଗା ଦେବୁ ? ଅପୁରୁଣୀ ବୁଢ଼ୀ କହିଲା ହଉ
ରହ । ଘର ଯେଗା ଦେଲା ଶୋଷାଇ କରିବାକୁ ଚାଲ ଚାଉଳ, ହାଣ୍ଡି,
ପଇବା ହେଣକା ସବୁ ଦେଲା । ଏମାନେ ଗୋଟାଏ ଘରେ ରହି
ଶୋଷାଇ ବାସ କରୁଚନ୍ତି ବୁଢ଼ୀ ଅପୁରୁଣୀ ଆଉ ଗୋଟାଏ ଘରେଚାର
ଶୋଷାଇବାସ କରିବାକୁ ଗଲା । ମନ୍ତ୍ରିପୁଅ କାହିଁକି ଦୁଆରକୁ ଯାଇ
ଦେଖେ ଯେ ଅପୁରୁଣୀ କଣ କରଚ ନା ଗୋଟାଏ ଘୋଡ଼ା ଚୂଲିକି
ମୁହାଁଇ ଦେଇଚ, ଆଉ ଗୋଟାକରେ ପାଣି ଅଣୁଚ, ଚାଉଳ
ଧୋଉଚ ଏହିପରି ସବୁ ଘରକାମଦାମ କରୁଚ । ଏ ଯାଇ ଅନ୍ୟ
ତିନ ସଙ୍ଗାତଙ୍କୁ କହିଲା ହେ ସଙ୍ଗାତ ଏ ଅପୁରୁଣୀ ଘରୁଟାଏ, ଚାଲ
ଆମେ ଏଠାରୁ ଯିବା ବାହାରି । ଚାରିହେଁଯାକ ଅଉ ଖାଇଲେ ନାହିଁ,
ପିଇଲେ ନାହିଁ, ଶୋଷାଇ ଛାଡ଼ି ଦେଇ ଘୋଡ଼ା ଉପରେ ବସି ଗଲେ
ବାହାରି, ବୁଢ଼ୀ ଅପୁରୁଣୀ ଯାହିଁ ଜାଣିଲା ଏମାନେ ଯାଉଚନ୍ତି ବାହାରି
ଲଣ୍ଡଭଣ୍ଡ ହୋଇ ଘରୁ ସୋରିଷ ହାତେରେ ଘେନ ଅସିଲା, ମନ୍ତ୍ରୀପୁଅ
ଘୋଡ଼ା ଲଙ୍ଗୁଡ଼ରେ ବାନ୍ଧି ଦେଲା, କହିଲା ତୁ ଯେମନ୍ତ ସତ୍ୟଯୁଗର
ସୋରିଷ ହୋଇଥିବୁ, ଛିଟି୬ ଯାଉଥିବୁ, ଗଛ ଉଠି୬ ଯାଉଥିବ, ଫୁଲ
ଫୁଟି୬ ଯାଉଥିବ । ଏହା କହି ଘରକୁ ଅସିଲା ଝିଅମାନଙ୍କୁ ଡାକ
ଛିଡ଼ିଲା କୁଆଡ଼େ ଯାଇଚ ଲୋ, କି ସୁନ୍ଦର ହେଣ୍ଡା ଅଣି ରଖିଥିଲି,

ଖାଇଥାନ୍ତି କୁଆଡ଼େ ଗଲୁ । ଏମାନେ ଡାକ ଶୁଣି ଦଉଡ଼ି ଆସିଲେ କହିଲେ ମା ଭଣ, କାହିଁକି ଡ଼ାକୁଚୁ ? ଏ କହିଲା ତେମେମାନେ ଯାଅ, ଦଉଡ଼ ମୁଁ ଘୋଡ଼ା ଲାଙ୍ଗୁଡ଼ରେ ସୋରଷ ବାନ୍ଧି ଦେଇଚି, ଗଛ ଉଠି ଯାଉଥିବ, ଫୁଲ ଫୁଟି ଯାଉଥିବ, ସେଇ ବାଟକୁ ଗୃହିଁ ଗୃହିଁକା ଦଉଡ଼ିବ ଯେ ତୁମେ ଗୃର ଭେଣ୍ଡ଼ାଙ୍କୁ ପାଇବ । ଏ ସାନ୍ତ-ନ୍ଧି ଅଯାଭ ଦଉଡ଼ିଲେ, ଯାଇ ଘୋଡ଼ା ପଛରେ ଲାଗିଲେ । ଏମାନେ ଅନାଇ ଦେଲାବେଳକୁ ଅସୁରୁଣୀ ପାଖଟା ଆସି ଘୋଡ଼ା ପଛରେ ଲାଗି ଗଲେଣି । ଏ ଗୃର ସଙ୍ଗାତ କହିଲେ ନିଶ୍ଚୟ ଯେମନ୍ତ ସତ୍ୟଯୁଗ ହୋଇଥିବ ଆମ୍ଭ ପଛରେ ଖାଲି କଣ୍ଟାବଣ ହୋଇଯିବ । କଣ୍ଟାବଣ ହୋଇଗଲା ଯୋଉଠି ସବା ବଡ଼ ଭଉଣୀ ରହିଲା ଅଉ ଛ ଭଉଣୀ ଫେର ଆସିଲେ, କଣ୍ଟାରେ ପଶି ପାରିଲେ ନାହିଁ । ଏ କଣ କରୁଥାଏ କଣ୍ଟା ସବୁ ଦାନ୍ତରେ କାଟିପକାଉଥାଏ, ଏମାନଙ୍କ ପଛେ ଦଉଡ଼ୁଥାଏ । ଫେର୍ ଏମାନଙ୍କ ପଛରେ ଲାଗିଗଲା । ଏମାନେ କହିଲେ ଯେବେ ସତ୍ୟଯୁଗ ହୋଇଥିବ ସବୁ ଅଗ୍ନିମୟ ହୋଇଯିବ । ସବୁ ଅଗ୍ନିମୟ ହୋଇଗଲା । ଅସୁରୁଣୀ ଛେପ ପକାଇ ପକାଇ ନିଆଁକୁ ଲିଭାଇଦେଲା, ଏମାନଙ୍କ ପଛରେ ମିଶି କଟୁଥିଲ ପୁଅକୁ ଅଉ ତା ଘୋଡ଼ାକୁ ଖାଇଦେଲା । ବାକି ତିନି ସଙ୍ଗାତ ପଳାଉଥାନ୍ତି, ଏ ତାଙ୍କ ପଛେ ଦୌଡ଼ି ସାଧବପୁଅକୁ ମନ୍ତ୍ରୀପୁଅକୁ ଖାଇଦେଲା । ରଜାପୁଅ ସମସ୍ତଙ୍କ ଆଗରେ ଥାଏ । ଯେଉଁଠାରେ ଗୋଟାଏ ଆମ୍ବଗଛ ଥିଲା ତହିଁରେ ଚଢ଼ିଗଲା କହିଲା ହେ ବୃକ୍ଷରାଜ, ନିଶ୍ଚୟ ସତ୍ୟଯୁଗର ଯେବେ ହୋଇଥିବୁ ତୁ ଫାଟି ଯିବୁ ମୁଁ ପଶିଯିବି । ରଜାପୁଅ ଆମ୍ବଗଛ ଭିତରେ ରହିଲା, ଅସୁରୁଣୀ ତା ଘୋଡ଼ାଟିକି ଖାଇଦେଇ ସେହି ଗଛମୂଳେ ବସି ରହିଲା । ଗୋଟିଏ ଦିବ୍ୟସୁନ୍ଦର ରାଣୀ ବେଶଧରି ବସିଲା, ମିଛେ କାନ୍ଦୁଥାଏ । ରଜା ଆସିଥିଲେ ପାରଧିକି, ତାଙ୍କ ଉପରେ ଲୁହ ପଡ଼ିଲା । ରଜା କହିଲେ

ରାକ୍ଷୁଣୀ ଥିଲୁ, ରାକ୍ଷସିବୃତ୍ତି କାହା ଲାଗି କଲୁ । ରାକ୍ଷୁଣୀ ଯା ରାକ୍ଷସିଲା, କହିଲା ରାଜାଙ୍କ ଲାଗି । ରଜା ସେଉଠୁ ସେ ଅପୁରୁଣୀକୁ ସାଙ୍ଗରେ ନେଇ ଘରକୁ ଗଲେ, ବାହାହେଲେ ରହିଲେ । ଅପୁରୁଣୀ ରଜାଙ୍କୁ କହିଲା ମୁଁ ଯେଉଁ ଆମ୍ବଗଛତଳେ ବସିଥିଲି, ତାକୁ ଆଣି ମୋ ଆଗରେ ଗଦାକର । ରଜା ଧୋବାକୁ ହୁକୁମ ଦେଲେ ଗଛକୁ କାଟିଆଣି ରାଣୀଙ୍କ ଆଗେ ଗଦାକରିବାକୁ । ଧୋବା ଗଲେ ଗଛକୁ ହାଣିଲେ । ସେ ଜୋଗୁଅର ନା ଜଳାସଜନ । ସେ ଗଛରେ ଥାଇ କହିଲା, ତୁ ଯେମନ୍ତ ସତ୍ୟଯୁଗର ଅମ୍ବଗଛ ହୋଇଥିବୁ, ଏହିକ୍ଷଣି କେଣ୍ଡେ ବଉଳିବୁ, ଚଣା ଫୁଟିବ, ଅମ୍ବହେବ, ପାଚିବ ମୁଁ ତହିଁରେ ପଶିବି; ସେ ଅମ୍ବଟି ଏହି ବେଣ୍ଟପୋଖରୀକି ଝୁଣ୍ଟିପଡ଼ିବ । ସତକୁ ସେହିଅ ହେଲା, ଜଳାସଜନ ଅମ୍ବ ଭିତରେ ପଶି ବେଣ୍ଟପୋଖରୀକି ଝୁଣ୍ଟି ପଡ଼ିଲା । ଧୋବାମାନେ ସେ ଗଛକୁ ହାଣିହାଣି ରାଣୀଙ୍କ ଆଗେ ଜମା କରିଦେଇଗଲେ । ଅପୁରୁଣୀ ଖଣ୍ଡକୁ ଖଣ୍ଡ କାଠ ଚଡ଼ମଡ଼ କରି ଚୋବାଉଥାଏ, କହୁଥାଏ କାଠଉଇଁଆ ଏଥିରେତ ନାହିଁ ଏହିପରି କରି ଗଛଯାକ କାଠ ଚୋବାଇଲା । ଯେଉଁ ଧୋବା କାଠକାଟି-ବାକୁ ଆସିଥିଲେ ସେ କହିଲେ ମଣିମା, ଗୋଟିଏ କଥା କହିବାକୁ ଭୟ ଲାଗୁଛି, ଆମେ ଯେତେବେଳେ ସେ ଗଛକୁ ପକାଉଥିଲୁଁ ସେ ଗଛ ସେହିକ୍ଷଣି ବଉଳିଲା, ଚଣା ହେଲା, ଗୋଟିଏ ଅମ୍ବହେଲା ପାଚିଲା, ସେ ପୋଖରୀରେ ଝୁଣ୍ଟି ପଡ଼ିଲା । ଅପୁରୁଣୀ କହିଲା ସେଇ-ଥିରେ ତ କାଠଉଇଁଆ ଗଲା କାହାର ଏଥିକି କେଉଁଠୁ ଆସିବ ? ରାଣୀ ରଜାଙ୍କୁ କହିଲା, ଗଛମୂଳେ ସେ ଯେଉଁ ବେଣ୍ଟପୋଖରୀ ଅଛି ତହିଁରେ ଯେତେକ ମାଛ କଇଁଛ ଗେଣ୍ଡା ଅଛନ୍ତି ମୋପାଖକୁ ସବୁ ଆସିବ, ସବୁ ଛଡ଼ା । କେଉଟ ଗଲେ ପୋଖରୀଠାରୁ ପାଣି ବୁହାଇଲେ, ଯେତେ ମାଛ କଇଁଛ ଥିଲେ ସବୁ ଆଣି ଅପୁରୁଣୀକି ଦେଲେ, ଆଉ ବଡ଼ ମାଛ ଦୋଟି, ତାଙ୍କ ନା ରାଘବ ତିଳକ, ସେ ଦୋଟିଙ୍କ ବଡ଼ରାଣୀଙ୍କ

ପାଖରେ ଦେଲେ । ବଡ଼ରାଣୀ ରୋହିତ ମାଛକୁ କାଟିଲା ବେଳକୁ କଳାରଜନ ତହିଁ ଭିତରେ ଥାଇ କହିଲା, ମା ଧୀରେ କାଟିବ ହେ, ମୁଁ ହାଣି ହୋଇଯିବି । ବଡ଼ରାଣୀ ମାଛଭିତରେ ମନୁଷଗୁଣ୍ଡି ଶୁଣି ଧୀରେ ବେକଠାଉଁ କାଟିଲାବେଳକୁ କଳାରଜନ ବାହାରି ପଡ଼ିଲା କହିଲା ତେମେ ମୋର ଧର୍ମକୁ ମା, ମୁଁ ତମର ଧର୍ମର ପୁଅ, ଅସୁରୁଣୀର ସବୁକଥା କହିଗଲା । ବଡ଼ରାଣୀ ଶୁଣିଲେ, ପୁଅଟିକୁ ଦେଖିଲେ, ରହିଲେ, ଏଣେ ଅସୁରୁଣୀ ସବୁ ବେଣ୍ଟାକୁ କହିଛ ପର୍ଯ୍ୟନ୍ତ ସୁଙ୍ଘୁଥାଏ, ଖାଇ ଦେଉଥାଏ, କହୁଥାଏ ଏଥିରେତ ସେ କାଠେଇଖିଆ ନାହିଁ କୁଆଡ଼େ ଗଲା ? ଏହାପରେ କର ପୋଖରୀର ମାଛ କଙ୍କଡ଼ା ସବୁ ଖାଇଲା । କେତେବେଳପରେ ଶୁଣିଲା ବଡ଼ରାଣୀଙ୍କ ଉଆସକୁ ଯୋଡ଼ାଏ ବଡ଼ମାଛ ଯାଇଛି, ସେଥିରୁ ଗୋଟାଏ ପୁଅ ବାହାରିଛି କହିଲା ସେଥିରେତ କାଠେଇଖିଆ ରହିଗଲା । ଏହା କହିଲା ଭୁକ ହୋଇରହିଲା । କେତେଦିନ ଗଲା ଅସୁରୁଣୀର ଗର୍ଭହେଲା, ତାର ପୁଅଟିଏ ହେଲା । ପୁଅଟିକ ଦଶ ବାର ବରଷ ହୋଇଗଲା ଯାଉଁ ଘୋଡ଼ା ଚଢ଼ି ଶିଖିଲା, କାଣ୍ଡମାର ଶିଖିଲା । ବଡ଼ ରାଣୀ ପୁଅ କଳାରଜନ ସାଙ୍ଗେ ଘୋଡ଼ା ଦଉଡ଼ି କରେ, କାଣ୍ଡ ମାରେ । କଳାରଜନ ଯେମନ୍ତ ଘୋଡ଼ା ଦୌଡ଼ି କରପାରେ, ଯେମନ୍ତ କାଣ୍ଡ ମାରପାରେ, ଅସୁରୁଣୀପୁଅକୁ ସେମନ୍ତ ଆସେ ନାହିଁ । ଅସୁରୁଣୀପୁଅର ସୁନାନଳ, ସୁନାକାଣ୍ଡ, କଳାରଜନର ବାଉଁଶନଳ ବାଉଁଶକାଣ୍ଡ । କଳାରଜନ ବାଉଁଶକାଣ୍ଡକୁ ଯୋଉଠିକି ଲକ୍ଷ କରେ, ସେଇଠି ପଡ଼େ, ଅସୁରୁଣୀ-ପୁଅର ସୁନାକାଣ୍ଡ ଏଣେତେଣେ ହୋଇ ଚାଲିଯାଏ । ଦିନେ ଅସୁରୁଣୀ ପୁଅ କଳାରଜନକୁ କହିଲା, ଭାଇ ତେମେ ଏ କାଣ୍ଡକୁ ମାର, ମୁଁ ତମ କାଣ୍ଡ ମାରେ । କଳାରଜନ ସୁନାକାଣ୍ଡକୁ ମାରଦେଲା ଯେ ଯାଇ ଅସୁରୁଣୀ ଘରକରେ ପଡ଼ିଲା, ବୁଢ଼ୀ ଅସୁରୁଣୀର ସାନଝିଅ ଗୋଟାଇକରି ରଖିଥାଏ । ଅସୁରୁଣୀପୁଅ ଯାଇ ମା ଆଗରେ କହିଲା, ଭାଇ ମୋ

କାଣ୍ଡ କୁଆଡ଼େ ମାରିଦେଲା ଆଜ ମାଗି ମାଗି ମତେ ଦେଉନାହିଁ । ଅପ୍ସରୁଣୀ କଳାରଜନକୁ ଡକାଇ କହିଲା ମୋ ପୁଅର କାଣ୍ଡ ଅଣିଦେ, ନଇଲେ ତୋର ମୁଣ୍ଡକାଟ ହେବ । ଏ ଯାଇଁ ବଡ଼ରାଣୀ ଆଗରେ କହିଲା, ମା ମତେ ଛ ମାସ ଛୁଟି ଦିଅ, ମୁଁ ତାଙ୍କ କାଣ୍ଡ ଆଣିଦେବି । ଏ କାହ୍ନୁଣିମାନଙ୍କଠି ହୋଇ ବିଦାୟ ଦେଲା । କଳାରଜନ ଘୋଡ଼ାରେ ଚଢ଼ି ବାହାରିଲା, ଯାଇ ପାସରଜା ଦେଶରେ ପହଞ୍ଚିଲା । ପାସରଜାଙ୍କଠିକୁ ବର ମିଳୁ ନ ଥାଏ ଯେ ସେ ଚୂଆ ଗାରେ ଚନ୍ଦନ ଗାରେ ଗନ୍ଧକ ଗାରେ ତିନି ଗାର କାଟିଦେଇ ବସିଚି, କଳାରଜନ ସେ ଗାର ଡେଇଁଦେଇ ଘୋଡ଼ା ନେଇଗଲା । ପାସରଜାଙ୍କଠି ଧାଇଁ ଦଉଡ଼ି ଯାଇ କଳାରଜନକୁ ଡାକିଲା କହିଲା କୁଆଡ଼େ ଯାଉଚ ଫେର ଆସ; ଆମ ଦେଉଙ୍କର ସତ୍ୟ ହୋଇଚି ଏ ଗାର ଯେ ଡେଇଁବ ସେ ତାଙ୍କୁ ବିଭା ହେବ । କଳାରଜନ କହିଲା ହଉ ତେବେ ରହୁଚି । ରଜାଙ୍କ ପାଖକୁ ଖବର ଗଲା; ବିଭାଘରର ଯୋଗାଡ଼ ହେଲା, ବିଭାଘର ହେଲା । ଚଉଥି ଦିନ ରାତିରେ କଳାରଜନ ପାସରଜାଙ୍କଠିକୁ କହିଲା ହେ ତମ ରାଜ୍ୟରେ ପଟେ ସୁନାକାଣ୍ଡ ପଡ଼ିଚି କି ? ଏ କହିଲା ନାହିଁ ଆମ ଦେଶରେ ପଡ଼ିନାହିଁ, ଅପାସଇଜରେ ପଡ଼ିଥିବ । ଏ କହିଲା ଅପାସଇଜ କୋଉଠି, ଏଠିକି କେତେ ବାଟ ? ପାସରଜାଙ୍କଠି କହିଲା ବାଘରଜା ଦେଶରେ, ଏଠିକି ପାଏ ବାଟ ହେବ । ତହିଁ ଆରଦିନ କଳାରଜନ ବାଘରଜାଦେଶକୁ ବାହାରିଲା, ଯାଇଚି ବାଘରଜାଙ୍କଠିକୁ ବର ମିଳୁ ନ ଥାଏ ଯେ ଯେ ସେହିପରି ତିନିଗାର କାଟିଦେଇ ବସିଚି, ସେ ଗାର ଡେଇଁ ଚାଲିଗଲା । ଧାଇଁ ସେହିପରି ଡାକିଆଣିଲା, ରଜା ଜାଣିଲେ ବିଭାଘର ହେଲା । ଚଉଥି ଦିନ କଳାରଜନ ବାଘରଜାଙ୍କଠିକୁ ସେହିପରି କାଣ୍ଡ କଥା ପଚାରିଲା । ଏ କହିଲା ଆମ ରାଇ-ଜରେ ପଡ଼ିନାହିଁ ଅପାସଇଜରେ ପଡ଼ିଥିବ । କଳାରଜନ ପଚାରିଲା, ଅପାଘର କୋଉଠି, ଏଠିକି କେତେ ବାଟ ହେବ ? ବାଘରଜାଙ୍କଠି

କହୁଛ ଅପାଘର ବାଗ୍ଧାରଜା ଦେଶରେ, ଏଠିକି ଯାଏ ବାଟ ହେବ । ତହୁଁ ଆରଦିନ କଳାଗଞ୍ଜନ ଘୋଡ଼ାରେ ଚଢି ବାଗ୍ଧାରଜାଦେଶକୁ ଗଲା । ସେଠାରେ ସେହିପରି ବାଗ୍ଧାରଜାଙ୍କଠାରୁ ବର ମିଳୁ ନ ଥାଏ ବୋଲି ସେ ସେହିପରି କଳା, ଧଳା, ହଳଦିଆ ତିନିଗାର କାଟି ବସିଚି; କଳାଗଞ୍ଜନ ଗାର ଡିଅଁଇ ଗୁଳିଗଲା । ତାକୁ ସେଠାରେ ସେହିପରି ଅଟକାଇଲେ, ବାଗ୍ଧାରଜାଙ୍କଠିଅ ସାଙ୍ଗେ ବର କହି ଦେଲେ । ଚତୁର୍ଥୀ ଦିନ ଏ ସେହିପରି କହିଲା, ସୁନାକାଣ୍ଡି ଏଠି ପଡ଼ିନାହିଁ; ଅପାଗଇଳ ଯମରଜାଦେଶରେ ପଡ଼ିଥିବ । କଳାଗଞ୍ଜନ ତହୁଁ ଆର-ଦିନ ଯମରଜା ଦେଶକୁ ଗଲା, ଯମରଜାଙ୍କଠିଅକୁ ସେହିପରି ବର ହେଲା; ଯମରଜାଙ୍କଠିଅ କାକଚରିତ୍ର ପଢ଼ା, ତାକୁ ତିନିପୁରର କଥା ଜଣା । ଏ ସୋଉଠୁ ପଚାରିଲା ସୁନାକାଣ୍ଡି ପଡ଼େ ଏ ଦେଶରେ ପଡ଼ିଚି କି ? ସେ କହିଲା ଆମ ରାଇଜରେ ପଡ଼ିନାହିଁ, ବୁଢ଼ୀଅସୁରୁଣୀ ରାଇଜରେ ପଡ଼ିଚି, ତା ପାନଙ୍କଠି ପଇଜର ରହିଚି । ତେମେ ଯେମନ୍ତ ଆଣିବାକୁ ଯିବ, ଏଇଯା କରିବ, ଅସୁରୁଣୀ ଛ ଝିଅ ଆଉ ବୁଢ଼ୀ-ଅସୁରୁଣୀ ଖରା ପୁଆଉଁଥିବେ, ତେମେ ଯିବ ମେଘନାଦ ପାଚେରିଙ୍କ ଡେଇଁ ପଡ଼ିବ, ସବା ସାନଝିଅକୁ ବଧାଏ ପକାଇବ; କହିବ ତୋର କଣ ମନେ ନାହିଁକି, ତୁ ହୋଇଥିଲୁ ଛ ମାସର ମୁଁ ହୋଇଥିଲି ବରଷକର, ତୋର ମୋର ବିଭାଘର ହୋଇଥିଲା, ତୁ ଏବେ ମତେ ଚିହ୍ନିପାରୁନାହୁଁ ? ଏହା କହିବ, ତାକୁ କାନ ଧରି ଘରକୁ ଟିଙ୍ଗି ନେଇଯିବ । ଏପରି କଲାକ୍ଷଣି ଆଉ ସମସ୍ତେ ବାହାରିଯିବେ ଦେଢ଼ଗାଗୁ ଶାଶୁ ମାନନା କରି, ତମକୁ ସେ ଘରକୁ ଡାକି ନେଇଯିବ, କଥାବାର୍ତ୍ତା ହେବ, ତେମେ ତାକୁ କଥାରେ ୨ ସବୁ ପଚାରି ନେବ । କଳାଗଞ୍ଜନ ସବୁ ଶୁଣିଲା, ତହୁଁ ଆରଦିନ ଘୋଡ଼ାରେ ବସି ଅସୁରୁଣୀ ରାଇଜକୁ ଗଲା, ଯମରଜାଙ୍କଠିଅ ଯେମନ୍ତ କହିଥିଲା ସବୁ ସେମନ୍ତ କଲା । ବୁଢ଼ୀ-ଅସୁରୁଣୀ ଆଉ ତାର ବଡ଼ଝିଅମାନେ ଖୁଅଡ଼େ ଗୁଳିଗଲେ ଜୋଇଁ

* ଝୁଲୁଲକାହାଣୀ ।

ମାଗନ୍ତା ଲେଖା କରି, ଏ ଦହେଁଯାକ ରହିଲେ, କଥାବାର୍ତ୍ତା ହେଲେ । କଳାଭଜନ କହିଲା ତମ ଦେଶରେ ପଚେ ସୁନାକାଣ୍ଡ ପଡ଼ିଚି କି ? ଏ କହିଲା ହଁ ପଡ଼ିଥିଲା । ମୁଁ ପାଇ ରଖିଚି, ଏହା କହିଲା, ଯୋଉ ଘରେ ତାଙ୍କୁ ରଖିଥିଲା ସେ ଘର ଫିଟାଇ ଅଣିବାକୁ ଗଲା । କଳାଭଜନ ତା ସାଙ୍ଗେ ସାଙ୍ଗେ ଯାଇଥାଏ, ଦେଖିଲା ସେ ଘରେ ଗୋଟାଏ ଭିଡ଼ ଉପରେ ଅଠଟି ଲାଉ ଥୁଆ ହୋଇଚି । ଏ ପଚାରିଲା ଏ ଲାଉ-ଗୁଡ଼ାକ କାହିଁକି ଅଛି ? ଅସୁରୁଣୀଝିଅ କହିଲା, ଏଥିରେ ସବୁ ଅମ୍ଭ-ମାନଙ୍କର ଜୀବନ ଅଛି; ଏ ବଡ଼ଟିରେ ମୋ ମାଉ, ଯାହାରୁ ଯୋଉଟି ସାନ ସେଇଟି ମୋ ବଡ଼ ଭଉଣୀର, ସେ କେତେଦିନ ହେଲା କୁଆଡ଼େ ଯାଇଚି ଅସିବାକୁ ନାହିଁ, ସବା ସାନଟି ମୋର, ଅଉଗୁଡ଼ାକ ମୋ ଭଉଣୀଙ୍କର, ଏହିପରି ସବୁ ଦେଖାଇ ଦେଲା । କଳାଭଜନ କଣ କଲା ଅଗଙ୍କଧ ସେ ସାନ ଲାଉଟି ଘେନ ଆସି ଡିଙ୍ଗ ଦେଲା ଯେ ସାନ ଅସୁରୁଣୀଟି ମରିଗଲା । ସାନ ଅସୁରୁଣୀଟି ମରିଗଲା ଯୋଉଠୁ, ଆଉ ଛଅଟି ଲାଉ ବାଡ଼େଇଦେଲା, ବଡ଼ ଭଉଣୀର ଲାଉଟି ଅଣିଲା, ସୁନାନଳ ସୁନାକାଣ୍ଡ ଘେନିଲା, ଅସି ଯମରଜା ଦେଶରେ ପହଞ୍ଚିଲା, କହିଲା ଅମକୁ ବିଦା କରିଦିଅ । ଯମରଜାଙ୍କ ଝିଅ ଶିଖାଇଥାଏ ତେବେ ବାପାଙ୍କୁ କିଛି ମାଗିବ ନାହିଁ, ଗଲାବେଳକୁ କହିବ ମତେ ସେ ଖେଣ୍ଟୀ ଯମଟିକି ଦିଅ । ଯମରଜା ଝିଅ ଜୋଇଁକୁ ବିଦା କଲେ, ଯିବା ବେଳକୁ କଳାଭଜନ କହିଲା ମତେ ଅପଣଙ୍କ ଖେଣ୍ଟୀ ଯମଟିକି ଦିଅନ୍ତୁ, ଯମରଜା କହିଲେ ଝିଅ ନ କହିଥିଲେ କି ଜୋଇଁ ମାଗନ୍ତା ? ହଉ ଦିଅ, ଏହା କହିଲେ ଖେଣ୍ଟୀ ଯମଟିକି ଦେଇ ବିଦା କରି ଦେଲେ । ସେଠାରୁ ଅସି ଯମରଜାଙ୍କ ଝିଅକୁ କାଠରେ ରଖାଇ, କଳାଭଜନ ବାଘରଜା ଘରକୁ ଗଲା, କହିଲା ମତେ ବିଦା କରିଦିଅ ମୁଁ ଯିବି, ବାଠରେ ମନୁଷ ବସିଛନ୍ତି । ବାଘ-ରଜାଙ୍କ ଝିଅ ଏହିପରି କହିଥାଏ ତେବେ ଗଲାବେଳକୁ ବାପାଙ୍କୁ ଖେଣ୍ଟୀ

ବାର୍ହାଣ୍ଟକ ମାଗିବ । ବାର୍ହାରଜା ସବୁ ଦେଲା, ବିଦାକଲାବେଳକୁ କଳାସଜନ କହିଲା ଆପଣଙ୍କ ଶ୍ରେଷ୍ଠୀ ବାର୍ହାଣ୍ଟକ ମତେ ଦିଅନ୍ତୁ । ଶ୍ରେଷ୍ଠୀ ବାର୍ହାଣ୍ଟକ ଦେଲେ, ବିଦା କରିଦେଲେ । ଆସିଲେ ସମସ୍ତେ ବାଟରେ ଠାଏ ରହିଲେ, ଏ ବାଘରଜା ଘରକୁ ଆସିଲା । ସେଠାରୁ ବିଦା ହୋଇ ଆସିଲା, ଆସିଲାବେଳକୁ ଶ୍ରେଷ୍ଠୀ ବାଘଟିକୁ ଯୌତୁକରେ ଆଣିଲା । ସେଠାରୁ ପାଗ୍ରରଜ ଘରେ ପହଞ୍ଚିଲା, ପାଗ୍ରରଜା ବି ସେହି ପରି ବିଦା କଲା । ପାଗ୍ରରଜାଠାରୁ ବି ସେହିପରି ଶ୍ରେଷ୍ଠୀ ପାଗଟିକି ଯୌତୁକ ଆଣିଲା । ସମସ୍ତେ ଏକାଠି ଠୁଳ ହେଲେ, ଆସିଲେ । ଆସିକରି ଘରପାଖରେ ପହଞ୍ଚିଲେ ଯେଉଁଠୁ ବଡ଼ରାଣୀକି ସମସ୍ତେ କହିଲେ, ତମ ପୁଅ ଶ୍ବଶୁର କନ୍ୟା ବିଭା ହୋଇ ଆସୁଛି । ଏ କହିଲା ମୁଁ କେଉଁଠୁ ଆଉ ପୁଅ ପାଇବି, ପୁଅ ତ ବରଷେ ହେଲା କୁଆଡ଼େ ଗଲାଣି, ମୁଁ କେଉଁଠି ପୁଅବୋହୂ ଦେଖିବି । ଏହା କହୁ କହୁ ପୁଅ-ବୋହୂ ଆସି ଦାଣ୍ଡଦୁଆରେ ପହଞ୍ଚିଲେ । ଯେତେ କହିଲେ ଆଉ ସତ କରୁ ନ ଥାଏ, ଦାଣ୍ଡକୁ ଯାଉ ନ ଥାଏ । ବୋହୂମାନଙ୍କ ସୁଆର ଯାଉଁ ଦାଣ୍ଡଦୁଆରେ ଥୁଆହେଲା, ବଡ଼ରାଣୀ ଗଲା ଭାଉନୂଆଣିକରି ପୁଅ ବୋହୂଙ୍କୁ ଘରକୁ ନେଇ ଆସି ବନ୍ଦାପନା କଲା । ବୋହୂମାନେ ଘରେ ରହିଲେ, କଳାସଜନ ଗଲା କାଣ୍ଡ ଦେବାକୁ, ଅସୁରୁଣୀକି ଦଣ୍ଡବତ କଲା । ଅସୁରୁଣୀ କହିଲା, 'ସଞ୍ଜେ ଫୁଟି ସକାଳେ ଯା ଜହ୍ନିଫୁଲ ପରି ଆୟୁଷ ପା' ଏହିପରି କଲ୍ୟାଣ କଲା । ଦିନେ ଦି ଦିନ ଗଲା, ଅସୁ-ରୁଣୀର ମନ କେମନ୍ତ କଳାସଜାକୁ ମାରିବ; କହିଲା ବେଣ୍ଟପୋଖରୀ ଉପରେ ଜମି ମାଣେ ହଳହେବ ତହିଁରେ ସୋରିଷ ତୋଳିଏ ବୁଣା ହେବ, ତାକୁ ଯେତେବେଳେ ସବୁ ଗୋଟେଇ କାଲି ସକାଳୁ ଥୋଇ-ଥିବୁତ ତୋ ମୁଣ୍ଡ ରହିବ, ନଇଲେ ତୋ ମୁଣ୍ଡ କଟାହେବ । କଳାସ-ଜନ ଆସିଲା ଘରକୁ, ମୁହଁ ଶୁଖେଇଦେଇ ବସିଥାଏ । ସେଦିନ ପାଗ୍-ରଜାଝିଅର ପାଳି ହୋଇଥାଏ । ପାଗରଜା ଝିଅ ସନ୍ଧ ପାଇଲା, ଭାତ

ବାଡ଼ିଲା, କଳାରଜକଙ୍କୁ ଡାକିବାକୁ ଗଲା, ଦେଖେ ଯେ କଳାରଜକ ମୁହଁ ଶୁଖେଇ ଦେଇ ବସିଛି । ପାଗରଜାଙ୍କିଅ କହିଲା, ତମେ ସବୁରି ପାଳିହେଲ ହସ ହସ ହୁଅ, ମୋ-ପାଳରେ କାହିଁକି ମୁହଁ ଶୁଖେଇ-ଦେଇ ବସିଥାଅ ? ଏ କହିଲା ହସିବି କଣ, ଜଣକ ଲାଗିଛି ଗୁରୁ ଜଣ ବଧବା ହେବେ । ପାଗରଜାଙ୍କିଅ କହିଲା ଏହା କାହିଁକି କହିଲ ? କଳାରଜକ କହିଲା ଦେଖ ଆମ ଅରଂମାଙ୍କର ହୁକୁମ ହୋଇଛି ବେଣ୍ଟପୋଖରୀ ଉପରେ ଷୋହଳ ଢୋଲିଏ ବାନ୍ଧିଦେଇ ଆସିବେ, ଆଜି ତାକୁ ବୋଉଡ଼ିମୁଁ ଗଢ଼ ବଢ଼ ଢୋଲକରି କାଲି ସକାଳକୁ ଥୋଇଥିବ, ନଇଲେ ମୋ ମୁଣ୍ଡ କାଟି ଦେବ । ପାଗରଜାଙ୍କିଅ କହିଲା ହେଉ ! ଏଇ ଗୁରୁକଥା ପାଇଁ ସେମିତି କାହିଁକି ହେଉଛ ? ସେ କଥା ବୁଝାଯାଏ ସିନା, ତେମେ ଆସ ଖାଇବାକୁ ଯିବ । କଳାରଜକ ଖାଇବାକୁ ଗଲା, ସମସ୍ତେ ଖାଇ ପିଇ ସାରିଲେ, ପାଗରଜାଙ୍କିଅ ଶ୍ରେଷ୍ଠୀପାଗକୁ ଡାକି କହିଲା ତୁ ଅଇଛୁକା ଯା ବାପାଙ୍କୁ କହିକି ତମ କୋଇଁକୁ ବିପତ୍ତି ପଡ଼ିଛି ତମର ଯେତେକ ପାଗ ଅଛନ୍ତି ସମସ୍ତଙ୍କୁ ପଠାଇଦିଅ । ଶ୍ରେଷ୍ଠୀପାଗ ଗଲା ପାଗରଜାଙ୍କୁ କହିଲା । ସେ ତାଙ୍କ ରାଜ୍ୟରେ ଯେତେ ପାଗ ଥିଲେ ସବୁ ପଠାଇ ଦେଲେ । ପାଗରଜାଙ୍କିଅ କହିଲା ଯାଅ ବେଣ୍ଟପୋଖରୀ ଉପରେ ଷୋହଳ ବୁଣାହୋଇଛି ତାକୁ ଏହି ଗଢ଼ ମଧ୍ୟରେ ଖୁଣ୍ଟିକରି ଢୋଲକସ୍ୟାରେ ସୂଜଇ ରଖି ଦେଇଯିବ । ପାଗଯାକ ଗଢ଼ ନ ପାହୁଣୁ ହେହିପରି କରିଦେଇ ପାଗରଜାଙ୍କିଅଠାରୁ ବିଦା ହୋଇ ଗଲେ । ସକାଳୁ ଅସୁରୁଣୀ ଉଠିଲାଷଣି କଳାରଜକ ଷୋହଳ ଢୋଲକସ୍ୟା ଜମା କରିଦେଲା । ଅସୁରୁଣୀ ମନେ ମନେ ବିଚାରିଲା ଏଥିରେତ ଯାକୁ ମାରି ପାରିଲି ନାହିଁ. କଣ କରିବି ? ଆଉ ଏକ ବୁଦ୍ଧି ପାଞ୍ଚିଲା, କହିଲା ମୋର ବାଘଦୁଧ ଦରକାର, କାଲି ସକାଳକୁ ଏଠାରେ ଯେମନ୍ତ ଭାବେ ବାଘଦୁଧ ଆଣି ଥୋଇଥିବୃତି ଆଜ୍ଞା, ନଇଲେ ତୋର ମୁଣ୍ଡ

ରହିବ ନାହିଁ । କଳାରାଜନ ଯେ ଦିନ ସେହିପରି ମୁହଁ ଶୁଖେଇ ଦେଇ ଘରେ ବସିଥାଏ । ସେ ଦିନ ବାଘରଜାରାଣୀ ଅଇ ପାଇଲି । ସେ ପଚାରିଲା ଏମନ୍ତ ବରଷ କାହିଁକି ? ଏ ଅସୁରୁଣୀ ଯାହା ସବୁ କହିଥିଲା, ସବୁ କହିଗଲା । ବାଘରଜାରାଣୀ କହିଲା ଏଥିପାଇଁ ଏତେ ଭାବନା କାହିଁକି ? ତମେ ନିଶ୍ଚିନ୍ତ ହୋଇ ବସ, ମୁଁ ସବୁ କରିଦେବି । ସମସ୍ତେ ଖାଇପିଇ ସାରିଲାରୁ ବାଘରଜାରାଣୀ ଶ୍ରେଷ୍ଠୀ ବାଘକୁ ପଠାଇ ବାପଘରେ ଗାଁରୁ ଦଶଭାର ବାଘଦୁଧ ଅଣାଇ ଅସୁରୁଣୀ ଦୁଆରେ ରଖାଇଦେଲା । ଅସୁରୁଣୀ ତହିଁ ଆରଦିନ ଉଠିଲା ବେଳକୁ ଦୁଆରେ ବାଘଦୁଧ ଥୁଆ ହୋଇଛି । ଅସୁରୁଣୀ ଦେଖିଲା, ସେହିପରି ମନେ ମନେ ହେଲା, ଏଥିରେତ ମାରି ପାରିଲି ନାହିଁ, କଣ କରିବ ? କଳାରାଜନକୁ କହିଲା କାଲି ସକାଳୁ ଦାଣ୍ଡଦୁଆରେ ଗୋଟିଏ ପୋଖରୀ ଖୋଳା ହୋଇଥିବ, ତହିଁରେ ଦୀପଦଣ୍ଡି ବସିଥିବ, ଚାରିପାଖ ପଥର ପାହାଚବନ୍ଧା ହୋଇଥିବ, ରାଜହଂସ ଖେଳୁଥିବେ । ଏମନ୍ତ ଯେବେ ହୋଇଥିବ ତ ତୁ ଜୀବନରେ ଥିବୁ, ନଇଲେ ତୋ ମୁଣ୍ଡକାଟ ହେବ । ଏକଥା ବାଘରଜାରାଣୀ ଅ ଶୁଣିଲା, ଶ୍ରେଷ୍ଠୀ ବାଘକୁ ପଠିଆଇ ବାଘରଜା ଦେଶରେ ଯେତେ ବାଘ ଥିଲେ, ସମସ୍ତଙ୍କୁ ଅଣାଇଲା । ସେମାନେ ରାତି ରାତି ପୋଖରୀ ଖୋଳି, ଦୀପଦଣ୍ଡି ବସାଇ, ପାହାଚ ବାନ୍ଧିଦେଇ ଚାଲିଗଲେ । ଅସୁରୁଣୀ ଉଠିଲାବେଳକୁ ପୋଖରୀ ଖୋଳା ହୋଇଛି, ଦେଖିଲା କଣ କହିବ ଭୁଲି ହୋଇ ରହିଲା । ସେଦିନ କଳାରାଜନକୁ କହିଲା, ମୋର ଯେବେ ତୁ ଏକଥା ନ କରି ପାରିବୁ ତୋର ମୁଣ୍ଡ ରହିବ ନାହିଁ । ତୁ କାଲି ସକାଳୁ ମୋର ସପ୍ତପୁରୁଷଙ୍କୁ ଆଣି ମୋ ଦୁଆରେ ଛିଡ଼ା କରିଥିବୁ, ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା ହେବି । କଳାରାଜନ ଏକଥା ଯମରଜାରାଣୀ ଅକୁ କହିଲା । ଯମରଜାରାଣୀ ଅ କହିଲା ଏହି ଛାର କଥପାଇଁ ଏତେ ଭାବନା କାହିଁକି ? ବାପାଙ୍କ ପାଖକୁ ଖବର ଦେଲେ ତ ସେ ପୁରର ସମସ୍ତଙ୍କୁ

ପଠାଇ ଦେଇ ପାରନ୍ତି, ସପ୍ତପୁରୁଷ ଜଣ । ଯମରଜାଙ୍କଠି ଶ୍ରେଷ୍ଠ ଯମକୁ ଡକାଇ ପଠାଇଦେଲା, କହିଲା ବାପାଙ୍କୁ କହିବୁ ତମ ଝିଅ ଜୋଇଁକୁ ବିପତ୍ତି ପଡ଼ିଛି ତମର ଯୋଉ ଯମପୋଥି ଖଣ୍ଡ ଅଛି ତାକୁ ଦିଅ । ଶ୍ରେଷ୍ଠୀ ଯମ ଯାଇ ଯମରଜାଙ୍କଠାରୁ ପାଞ୍ଜି ଘେନ ଆସିଲା । କଳାରାଜନ ଏହି ଯମଗଣ ପୋଥିକ ନେଇ ଅସୁରୁଣୀ ଘର ଦୁଆର ମୁହଁରେ ପିଠାଇ ଲମ୍ବେଇ କରି ରଖିଦେଇ ବସି ରହିଲା । ଅସୁରୁଣୀ ଉଠି ଦେଖେ ଯେ ତାର ସପ୍ତପୁରୁଷ ଦୁଆରେ ରୁଣ୍ଡ ହୋଇଅଛନ୍ତି । ଦେଖେ ଯେ ତାର ମା ଭଉଣୀଯାକ ସବୁ ମରି ତାଙ୍କ ସାଙ୍ଗେ ଅଛନ୍ତି । ସେମାନଙ୍କୁ ପଚାରିଲା ତେମେ ସବୁ କେମନ୍ତ ମଲ ? ଏମାନେ କଳା-ରାଜନ ଯାହା ଯାହା କରିଥିଲା ସବୁ କହିଲେ । କଳାରାଜନ ସେଉଠୁ ଜଣକଲା ପୋଥିଖଣ୍ଡି ଘେନ ଆସିଲା, ଅସୁରୁଣୀର ଜୀବନ ଲଉଡ଼ିକ ନେଇ ତାକୁ ଦେଖାଇ ଦେଲା । ଅସୁରୁଣୀ କହିଲା ମୋ ଲଉଡ଼ି ଦେ, ଏ କହିଲା ମୋ ଛଇ ସଙ୍ଗାତକୁ ଦେ, ଗୁରୁ ଘୋଡ଼ାକୁ ଦେ, ମୁଁ ଲଉଡ଼ି ଦେବି । ଅସୁରୁଣୀ କଣ କଲା ବାନ୍ତି କରି ପକାଇଲା ଯେ ଛଇସଙ୍ଗାତ ବାହାରି ପଡ଼ିଲେ, ଘୋଡ଼ା ଗୁରୁଠା ବାହାରି ପଡ଼ିଲେ । କଳାରାଜନ ରାଜାଙ୍କୁ କହିଲା, ବାପା ! ଏହାକୁ ରଖିବ କି ମାରିବ ? ରଜା କହିଲେ ଏହାକୁ ଆଉ ରଖିନାହିଁ (୧) ମାରିଦେ, କଳାରାଜନ ଲଉଡ଼ି ପିଟିଦେଲା ଯେ ଅସୁରୁଣୀର ପ୍ରାଣ ବାହାରି ଗଲା । ରଜା ପୁଅ ବୋହୂ ଘେନ ଆନନ୍ଦରେ ଘରଦୁଆର କଲେ, ମୁଁ ଗଲିକୁ କଥା ନ କହିଲେ । ମୋ କଥାଟି ସରିଲା ଇତ୍ୟାଦି ।

—ଫ଼ଙ୍କ୍ଷ—

(୧) ଏହାକୁ ରଖିବା ଉଚିତ ନୁହେଁ ।



# ବାବାଜୀ କଥା ।

ଗୋଟିଏ ରଜା ଥିଲେ, ତାର ସାତ ଭାରିଯା । ସେ ରଜାର ଅତୁଳ ସମ୍ପତ୍ତି, ଭୋଗ କରିବ କିଏ ? ରାଣୀମାନଙ୍କର କାହାର ପୁଅ ଝିଅ ନ ଥାନ୍ତି । ରଜା ଭାରି ଚିନ୍ତା କରି ବନସ୍ତରେ ତପସ୍ୟା କରିବାକୁ ଗଲେ । ତପସ୍ୟା କରୁ କରୁ, ଦିନେ ଗୋଟିଏ ସାଧୁ ଗୋସାଇଁ ଆସିଲେ, ପଚାରିଲେ କାହିଁକି ଏପରି କଷ୍ଟ ସହି ତପସ୍ୟା କରୁଛ ? ରଜା କହିଲେ ମୋର ସାତ ଭାରିଯା, କାହାରି କିଛି ସନ୍ତାନ ନାହିଁ । ସାଧୁ କହିଲେ ହଉ ଯା ତୋ ଗୁହାରି ଦଇଅଁ ଶୁଣିଲେଣି, ଯା ଏ ଯୋଉ ଅମ୍ବଗଛ ଦିଶୁଛି, ସେଥିକି ଗୋଟିଏ ଠେଙ୍ଗା ପକାଇବୁ, ସାତଟି ଅମ୍ବ ଝଡ଼ିବ, ନେଇ ଭାରିଯାମାନଙ୍କୁ ଦେବୁ, ବୁଝି ଲୋଭ କରି ଆଉ ଠେଙ୍ଗା ପକାଇବୁ ନାହିଁ । ରାଣୀମାନେ ସେ ଅମ୍ବ ଖାଇ ଗର୍ଭ ହେବେ, ସାତଟି ପୁଅ ଜନ୍ମ କରିବେ । ବାବାଜୀ ଏହା କହି ଗଲେ ବାହାରି । ରଜା ଗୋଟିଏ ଠେଙ୍ଗା ପକାଇଲେ ଯେ ସାତଟି ଅମ୍ବ ପଡ଼ିଲା । ସାଧୁଙ୍କ କଥା ନ ମାନି ଲୋଭରେ ଆଉ ଗୋଟିଏ ଠେଙ୍ଗା ପକାଇଲେ, ଆଉ ଅମ୍ବ ପଡ଼ିବ କଣ, ଯୋଉ ସାତଟି ପଡ଼ିଥିଲା ସେ ଗଛରେ ଲାଗିଗଲା । ରଜା କାନ୍ଦି ବୋବାଇ ମୁଣ୍ଡ କଚାଡ଼ି ହେଲେ, ବନସ୍ତଯାକ ସେ ସାଧୁଙ୍କୁ ଖୋଜିଲେ । ଖୋଜି ଖୋଜି ତାଙ୍କୁ ପାଇଲେ, ତାଙ୍କ ଆଗରେ ସବୁ କଥା କହିଲେ । ସାଧୁ କହିଲେ ମୁଁ ପରା ମନା କରିଥିଲି, ତୁ କାହିଁକି ଫେର ଠେଙ୍ଗା ପକାଇଲୁ ? ଏହା କହି ସେ ଗଛମୂଳକୁ ଗଲେ, ସାତଟି ଅମ୍ବ ପାଇଲେ, ରଜାକୁ ଦେଲେ, କହିଲେ ତୋର ସାତଟି ପୁଅ ହେବେ, ସବା ବଡ଼ପୁଅଟି ମତେ ଦେବୁ । ରଜା ଅମ୍ବ ନେଇ ଘରକୁ ଆସିଲେ, ରାଣୀମାନଙ୍କୁ ଗୋଟିଏ ୨ ଦେଲେ । ରାଣୀମାନେ ଗର୍ଭ ହେଲେ, ସମ୍ପ-

ସମସ୍ତରେ ସାତଟି ପୁଅ ଜନ୍ମ କଲେ । ଷଠୀ, ପଞ୍ଚୁଆଠ ଏକୋଇଶା ସବୁ ଗଲା, ପୁଅମାନେ ବଢ଼ିଲେ ଯେମନ୍ତ ଗୋଟିଏ ୨ ପୂନ୍ନଅଚନ୍ଦ୍ର । ବଡ଼ ପୁଅଟି ସମସ୍ତଙ୍କଠାରୁ ସୁନ୍ଦର ହୋଇଥାଏ । ପିଲାମାନେ ବଡ଼ ବଡ଼ ହୋଇ ଗଲେ, ପାଠ ପଢ଼ିଲେ, ଘୋଡ଼ା ଚଢ଼ି ଶିଖିଲେ, ହାତମାର ଶିଖିଲେ; ରାଣୀମାନଙ୍କ ଗୋଡ଼ ଆଉ ତଳେ ପଡ଼ୁ ନ ଥାଏ । ଦିନେ ସେ ସାଧୁ ଗୋସେଇଁ ଆସିଲେ ପୁଅ ନବାପାଇଁ । ରଜା କଣ କଲେ ବଡ଼ପୁଅକୁ ଲୋଭ କରି ଦେଲେ ନାହିଁ, ସବା ସାନପୁଅଟିକି ଦେଲେ । ତାକୁ ନେଇ ଯାଉଚନ୍ତି, ବାବାଜୀ ପଚାରିଲେ, ତୁମ୍ ଝାଡ଼୍ ସର୍ଓଁ କା ଜଙ୍ଗଲ୍ ଯାଁଓ, ଏ କହିଲା ହାମ୍ ରଜାକା ବେଟା ରଜଦାଣ୍ଡମେ ଯାଁଓ । ବାବାଜୀ ସେଇଠୁ ଜାଣି ପାରିଲେ, ଏ ବଡ଼ପୁଅ ନୁହେ, ରଜା ମତେ ଠକ ଦେଇଚି ବୋଲି କହି ତାକୁ ନେଲେ, ରଜାଙ୍କୁ ଫେରାଇ ଦେଇଲେ, କହିଲେ ଏତ ମୋର ନୁହେଁ ମୁଁ କାହିଁକି ନେବି ? ରଜା ସାନପୁଅକୁ ରଖିଲେ, ତା ଉପର ପୁଅକୁ ଦେଲେ । ସେ ବି ସେହି-ପରି ବାବାଜୀଙ୍କି ବାଟରେ କହିଲା । ବାବାଜୀ ତାକୁ ବି ଫେରାଇ ଦେଲେ । ବଡ଼ପୁଅକୁ ଛାଡ଼ି ଆଉ ଚାରିପୁଅଙ୍କୁ ରଜା ସେହିପରି ଦେଲେ, ବାବାଜୀ ତାଙ୍କୁ ବି ଫେରାଇ ଦେଲେ । ସବା ଶେଷକୁ ରଜା ବଡ଼ପୁଅକୁ ଦେଲେ । ବାବାଜୀ ତାକୁ ପଚାରିଲେ, ବେଟା ! ଝାଡ଼୍ ଯାଁଓ କି ଜଙ୍ଗଲ ଯାଁଓ ? ଏ କହିଲା ବାବାଜୀକା ବେଟା, ବାବାଜୀ ଯାହା ଯାଁଓ ହାମ୍ ଭି ଯାଁଓ । ବାବାଜୀ ଯାକୁ ନେଲେ ଘରେ ରଖିଲେ, ଅପଣାର ଘରଦୁଆର ଦେଖାଇଲେ, ଖାଲି ଗୋଟିଏ ଘର ଦେଖାଇଲେ ନାହିଁ । ଏ ବାବାଜୀ ନୁହେ ଗୋଟାଏ ପିଲାଖିଆ ଅସୁର; ସାଧୁଗୋସେଇଁ ରୂପ ଧରି ଏତେ ନବରଙ୍ଗ କରୁଥିଲା ? ଦିନେ ବାବାଜୀ ଯାକୁ ଘରେ ରଖି କୁଆଡ଼େ ଗଲା । ଏ ଯୋଉ ଘର ବାବାଜୀ ଦେଖାଇ ନ ଥିଲା, ସେ ଘର ଫିଟାଇ ଦେଖେ ଯେ ସେ ଘରେ ଗୁଡ଼ାଏ ପିଲାଙ୍କ ମୁଣ୍ଡ ଟଙ୍ଗା ହୋଇଚି । ଏ ମୁଣ୍ଡ ସବୁ ଯାଙ୍କୁ ଦେଖି ହସିଲେ ।

ଏ ପଚାରିଲା କାହିଁକି ହସିଲ ? ଏମାନେ କହିଲେ, ତୁ ତ ଏହିକ୍ଷଣି ଆମ ପାଖକୁ ଆସିବୁ । ବାବାଜୀ ଯାଉଛ ତେଲ ଆଣିବାକୁ, ତେଲ ଆଣିଲେ ତତେ କହିବ ଅଣ୍ଡସ୍ଯା ଖୋଲ, ଚୁଲ୍ଲୀଲଗା, ଝୁଙ୍କଣା ବସା । ତୁ ଯଦି ଗୋଟିଏ ବୁଦ୍ଧି କରିବୁ ତେବେ ସେ ତତେ ମାରି ପାରିବ ନାହିଁ । ଯେତେବେଳେ ସେ କହିବ ଅଣ୍ଡସ୍ଯା ଖୋଲ, ତୁ କହିବୁ ମତେ ଆସେ ନାହିଁ ତୁମେ ଆଗ ଖୋଲି ମତେ ଶିଖାଇଦିଅ । ଏହିପରି ଯେତେ କଥା କହିବ, ତୁ କହିବୁ ମତେ ଶିଖାଇଦିଅ ମୁଁ କରିବି । ସାଧୁ ଅଣ୍ଡସ୍ଯା ଖୋଲି, ଚୁଲ୍ଲୀ ଲଗାଇ, ଝୁଙ୍କଣା ବସାଇ, ତହିଁରେ ତେଲ ଅଜାଡ଼ି ତେଲ ଯେତେବେଳେ କଡ଼ କଡ଼ ହୋଇ ଫୁଟିବ, ତତେ କହିବ ତେଲରୁ ପାଣି ମଲାଣି କି ନା ଦେଖିଲୁ, ତୁ କହିବୁ ତୁମେ ଆଗେ ଦେଖ । ସେ ଯେତେବେଳେ ନଇଁପଡ଼ି ତେଲ ଝୁଙ୍କୁଣାକୁ ଅନାଇବ, ତୁ ତା ମୁଣ୍ଡକୁ ତେଲ ଝୁଙ୍କଣାରେ କରି ମାଡ଼ିଦେବୁ ଯେ ସେ ମରିଯିବ, ସେ ଯାହା ଆଉ ତେଲ ଝୁଙ୍କଣାରେ ତୋ ମୁଣ୍ଡ ମାଡ଼ି ଦେଇ ମାରିପକାନ୍ତା, ତା ଆଉ କରି ପାରିବ ନାହିଁ । ଏ କଥା ଶୁଣି, ସେ ଘର ବନ୍ଦ କରି ଦେଇ ଆସି ବସିଥାଏ । ବାବାଜୀ ତେଲ ନେଇ ଆସିଲା, ମୁଣ୍ଡମାନେ ଯେମନ୍ତ କହିଥିଲେ ସେହିପରି କଲା । ରଜାପୁଅ ଶେଷକୁ ବାବାଜୀର ମୁଣ୍ଡକୁ ଫୁଟିଲା ତେଲରେ ମାଡ଼ିଦେଲା ଯେ ସେ ମରିଗଲା । ରଜାପୁଅ ମନେ ବିଚାରିଲା ଏ ମୁଣ୍ଡମାନଙ୍କ ଯୋଗୁଁ ଯିନା ମୁଁ ଉଦ୍ଧାର ପାଇଲି ମୁଁ ଏମାନଙ୍କୁ କିପରି ଉଦ୍ଧାର କରିବି, ସେଇଠି ବସି କାନ୍ଦିଲା । ଅସି ରାତ୍ର ଅଧ ହେଲାଣି, ଈଶ୍ୱର ପାର୍ବତୀ ଆକାଶରେ ଉଡ଼ି ଯାଉଛନ୍ତି । ପାର୍ବତୀ କହିଲେ ରହିବଟି, ଆଜି କାହିଁକି ପୃଥ୍ୱୀକଥା ଭାରି ଲାଗୁଛି ? ଈଶ୍ୱର କହିଲେ ଭଲ ହୋ ଆମର ସେଥିରେ କାଅଣ ଅଛି । ପାର୍ବତୀ କହିଲେ ଆମରତ କିଛି ନାହିଁ, ଆମେ ପୃଚ୍ଛି ଦଉଅଛୁଁ କାହିଁକି ? ଈଶ୍ୱର ପାର୍ବତୀ ଗଲେ ସେ ରଜାପୁଅ ପାଖକୁ, ଯାଇକି ସବୁ ପଚାରିଲେ । ରଜାପୁଅ ସବୁ କହିଗଲା, ଯେପରି ଜନ୍ମହେଲା, ଏଠାକୁ ଯେପରି ଆସିଲା

ମନ୍ତ୍ରୀମାନେ ଯାହା କହୁଥିଲେ, ସବୁ ଅଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ କହିଗଲା । ଈଶ୍ୱରପାର୍ବତୀ ଶୁଣିଲେ, କହିଲେ ହଉ ତେଣିକି ମୁହିଁ ବୁଲା । ଏ ତେଣିକି ମୁହିଁ ବୁଲାଇଲା, ଈଶ୍ୱରପାର୍ବତୀ ଫୁଲପାଣି କରି ଜୀବନମୁଠା ଛିଞ୍ଚିଦେଲେ ଯେ, ସବୁ ହାଡ଼ ଚମ ଏକାଠି ଲାଗିଗଲା, ଅଂଜୁଳିଜୀବନମୁଠା ଛିଞ୍ଚିଦେଲେ ଯେ ସମସ୍ତେ ଜୀଇ ଉଠିଲେ । ଈଶ୍ୱରପାର୍ବତୀ ଉଭେଇ ଗଲେ । ଏମାନେ ଯେ ଯାହା ଘରକୁ ଗଲେ, ରଜାପୁଅ ତା ଘରକୁ ଗଲା, ଯୁବରାଜ ହେଲା, ସୁଖରେ ଯୁବରାଇଜ କଲା । ମୁଁ ଗଲାକୁ କଥା କହିଲି ନାହିଁ, ମୋ କଥାଟି ସରିଲା ଇତ୍ୟାଦି ।





## ଚମାରୁଣୀଝିଅ କଥା ।

ଗୋଟିଏ ଦେଶରେ ରଜାଝିଅ, ମନ୍ତ୍ରୀଝିଅ, ସାଧବଝିଅ, କୋଟୁଆଳଝିଅ ଚଉଠ ସଙ୍ଗାତ । ଚାରିହେଁ ଏକାଠି ବନସ୍ତରେ ଯାଇ ଖେଳନ୍ତି । ଦିନ-କର ମଣ୍ଡାପିଠା ହୋଇଥିଲା, ଚାରି ସଙ୍ଗାତ ବନସ୍ତ ଭିତରେ ଖାଇବାକୁ ପିଠା ନେଇକରି ଗଲେ । ଖାଉଚନ୍ତି ମନ୍ତ୍ରୀଝିଅ କହିଲା ହେ, ମଣ୍ଡାଗଛ ଲଗାନ୍ତୁଁ, ଆଉ ସମସ୍ତେ କହିଲେ ହଉ । ଗୋଟିଏ ମଣ୍ଡାପିଠାଟିଏ ପୋତିଦେଲେ, କହିଲେ କାଲିକି ଯେବେ ଗଛ ହୋଇଥିବୁ ତ ନ ହେଲେ ମାମୁଙ୍କର କଣ୍ଠିରେ ହାଣିବୁ । ଏହିପରି କହି କହି ପିଠାଟି ଗଜା ହେଲା, ଗଛ ହେଲା, ଗଛଟି ବଢ଼ିଲା, ଫୁଲ ଫୁଟିଲା, ଫଳି ଧଇଲା, ମଣ୍ଡାପିଠା ଫଳିଲା । ଗଛଟି ମଣ୍ଡାପିଠାରେ ଲଦି ହୋଇଗଲା, ସୁନ୍ଦର ଛେନା ଶୀକଲ କର୍ପୂର ପୂରଣ ପିଠାଟିମାନ । ଗୋଟିଏ ଖାଇଲେ

ମନରୁ ଛାଡ଼ିବ ନାହିଁ । ଚାରି ସଙ୍ଗାତ ପ୍ରତିଦିନ ସେ ବନସ୍ତକୁ ଯାନ୍ତି, ମଣ୍ଡାଗଛରେ ଚଢ଼ି ପିଠା ଖାନ୍ତି । ଦିନେ ଗଛରେ ଚଢ଼ି ପିଠା ଖାଉଛନ୍ତି, ଏହି ସମୟରେ ବୁଢ଼ୀଅସୁରୁଣୀ ସେ ବାଟରେ ଯାଉଥିଲା, ମଣ୍ଡାଗଛ ମୂଳରେ ପହଞ୍ଚି କହିଲା ହଇରେ ଝିଏ, କଣ ଖାଉଛ, ମତେ ଗୋଟିଏ ଦିଅନ୍ତ । ମଲିଝିଅ ଗଛ ଅଗରେ ଥିଲା, ତା ତଳକୁ କଣ୍ଟାଅଳିଝିଅ, ତା ତଳକୁ ସାଧବଝିଅ, ମୂଳପାଖକୁ ରଜାଝିଅ ବସିଥିଲା, ମଲିଝିଅ ପଠାଟିଏ ତୋଳି କଣ୍ଟାଅଳିଝିଅ ହାତକୁ, କଣ୍ଟାଅଳିଝିଅ ସାଧବଝିଅ ହାତକୁ, ସାଧବଝିଅ ରଜାଝିଅ ହାତକୁ ବଢ଼ାଇ ଦେଲା । ରଜାଝିଅ ବୁଢ଼ୀଅସୁରୁଣୀ ହାତକୁ ଦଉଛି, ଅସୁରୁଣୀ ତାକୁ ଧରିନେଇ କାନ୍ଧରେ ବସାଇ ଗଲା । ତିନି ସଙ୍ଗାତଯାକ କାନ୍ଦି ବୋବାଇ ଘରକୁ ଗଲେ, ସବୁକଥା ରଜା ଆଗରେ କହିଲେ । ରଜାଙ୍କର ବହୁତ ଖୋଜା ହେଲା, ଝିଅକୁ କୋଉଠି ପାଇଲେ ନାହିଁ । ଏଣେ ଅସୁରୁଣୀ ତାକୁ ନେଇ ନିଜ ଘରେ ପହଞ୍ଚିଲା । ଅନେକ ବନସ୍ତ ଭିତରେ ମେଘନାଦ ପାଚେରି ବୁଲିଛି, ତାହା ଭିତରେ ଅସୁରୁଣୀର ଘର । ଅସୁର ଅସୁରୁଣୀ ମନିଷ ଖାନ୍ତି । ଏ ବୁଢ଼ୀଅସୁରୁଣୀ ରଜାଝିଅକୁ ଖାଇଲା ନାହିଁ, ଘରେ ରଖି ଆପଣାର ଝିଅପରି କରିଥାଏ, ତାକୁ ସବୁ ଭଲ ଜିନିଷ ଆଣି ଖାଇବାକୁ ଦିଏ । ରଜାଝିଅ ମନ ସେଥିରେ ନ ଥାଏ, ସବୁବେଳେ ଖାଲି କାନ୍ଦୁଥାଏ । କେତେଦିନ ଗଲା, ବୁଢ଼ୀଅସୁରୁଣୀ ରଜାଝିଅକୁ ସବୁଘର ଦେଖାଇଲା, ଯେଉଁ ଘରେ ମନିଷ ଖାଇ ହାଡ଼ ପକାଇଥାଏ, ସେ ଘର ଦେଖାଇଲା ନାହିଁ । ପ୍ରତିଦିନ ଅସୁରୁଣୀ ଚରିବାକୁ ଯାଏ, ସେ ନ ଥିଲା ସମୟରେ ରଜାଝିଅ ସେ ସବୁ ଘର ଦେଖେ, ଭୟରେ କାନ୍ଦେ । ରଜାଝିଅ ଦିନେ ଅସୁରୁଣୀଘରୁ ଖଣ୍ଡିଏ ପୋଥି ପାଇଲା, ତହିଁରେ ରୂପ ପରିବର୍ତ୍ତନ ବିଦ୍ୟା ଥିଲା । ରଜାଝିଅ ତାକୁ ସବୁ ଶିଖିଲା । ଏହିପରି କେତେଦିନ ଅସୁରୁଣୀ ଘରେ ରହିଲା, ବେଶ ବଡ଼ଟିଏ ହେଲା । ତନୁ ମନ କାହିଁରେ ଲାଗୁ ନ ଥାଏ, ଅସୁରୁଣୀ

ବାହାରକୁ ଗଲା । ଜନ୍ତୁ ଯନ ବାହାରେ ଲାଗି ନ ଥାଏ, ପାଟେଣି କଣାରେ ବାହାରକୁ ଅନାଉଥାଏ । ଏବେ ସେ ବନସ୍ତକୁ ଆରଦେଶର ରଜାପୁଅ ପାରିଧିକି ଆସିଥିଲା । ବନସ୍ତ ଭିତରେ ଦିବ୍ୟସୁନ୍ଦର ଘରଟିଏ ଦେଖି ତା ଭିତରକୁ ଗଲା, ଦେଖିଲା ରଜାଝିଅ ବସି କାନ୍ଦୁଛି । ରଜାଝିଅ ଯାକୁ ଦେଖି କହିଲା ତେମେ କିଏ ? ଏଠାକୁ କାହିଁକି ଆସିଲ ? ଏ ଅସୁରୁଣୀଘର, ଅସୁରୁଣୀ ଆସି ତମକୁ ଦେଖିଲେ ଏହିକ୍ଷଣି ଖାଇଯିବ, ତେମେ ପଳାଅ । ରଜାପୁଅ ରଜାଝିଅର ପରିଚୟ ପଚାରିଲା, ସେ ଆଦ୍ୟଠାରୁ ପ୍ରାନ୍ତ ପର୍ଯ୍ୟନ୍ତ ସବୁ କହିଗଲା । ରଜାପୁଅ କହିଲା ମୁଁ ତମକୁ ଏଠାରୁ ଉଦ୍ଧାର କରିନେବି, ତେମେ ଆଜି ବୁଢ଼ୀଅସୁରୁଣୀ ଆସିଲାରୁ ତାକୁ ପଚାରିବ, ତା ଜୀବନ କୋଉଠି ଅଛି । ଏହିପରି କଥାବାର୍ତ୍ତା ହେଉଥିଲେ । ଅସୁରୁଣୀ ଆସିଲା । ରଜାପୁଅକୁ ଆଉ ବୁଦ୍ଧି ଦିଶିଲା ନାହିଁ ରଜାଝିଅ ଅସୁରବିଦ୍ୟାବଳରେ ରଜାପୁଅକୁ ମାଛି ଆଉ ଘୋଡ଼ାକୁ ଭଅଁର କରିଦେଲା, ସେମାନେ ଓଳି ଉପରେ ବସି ରହିଲେ ଅସୁରୁଣୀ ଆସି କହିଲା କେଉଁଠି ନରଦେହ ବାସୁଛି, ଘରର ଏକଣ ସେକଣ ଖୋଜିଲା । ରଜାଝିଅ କହିଲା ଏଠାକୁ ଆଉ ମଣିଷ କୋଉଠୁ ଆସିବ ? ମତେ ଯଦି ଇଚ୍ଛା ହେଉଛି ଖାଅ । ଅସୁରୁଣୀ ଏଥିରେ ଭୁଲିଗଲା, ଖାଇଲା ପିଇଲା ବସିଲା, ରଜାଝିଅକୁ କହିଲା ଝିଅଲୋ ! ମୁଣ୍ଡରୁ ଗୋଟାଏ ଉକୁଣି ଦେଖିଦେ । ରଜାଝିଅ ମୁଣ୍ଡ ଦେଖିଲା, ଗୋଡ଼ରୁ କଣ୍ଟା କାଢ଼ିଦେଲା, ଯାହା ସବୁ କରୁଛି ବୁଢ଼ୀକୁ ପଚାରିଲା ହଇଲୋ ମା, ତୁ ମରିଗଲେ ମୁଁ କେଉଁଠି ରହିବି ? ବୁଢ଼ୀ କହିଲା, ଅସୁରୁଣୀ କେବେ ସହଜରେ ମରନ୍ତି, ମତେ ଫେର୍ କିଏ ମାରିବ ? ଆରଦେଶ ରଜାର କେଣ୍ଟପୋଖରୀ ଅଛି, ତହିଁରେ ସାତତାଳ ପାଣି ସାତତାଳ ପଙ୍କ, ତା ଭିତରେ ଗୋଟିଏ ଫଡ଼ୁଆ ଅଛି, ଫଡ଼ୁଆ ଭିତରେ ଗୋଟିଏ ଭଅଁର, ସେ ଭଅଁରର ବେକ ଯଦି କେହି ମୋଡ଼ିଦେବ ତେବେ ମୁଁ ମରିବି । ଏହା କିଏ ଜାଣିଣ ଯେ କିଏ କରିବ ? ରଜାପୁଅ ମାଛି

ହୋଇ ଓଗାଳୁପରେ ଏସବୁ ଶୁଣୁଥାଏ, ଅପ୍ସରୁଣୀ ଫେରି ଚଢ଼ିବାକୁ ଗଲା, ରଜାପୁଅ ନିଜରୂପ ହୋଇ ଆପଣା ଦେଶକୁ ଗଲା । ମୂଳିଆ ଡକାଇ ବେଣ୍ଟପୋଖରୀର ପାଣି ବୁହାଇଲା, ପଙ୍କ କଢ଼ାଇଲା, ଫଟୁଅଟିକି ବାହାର କରି ତହିଁ ଭିତରୁ ଭଅଁରଟିକି କାଢ଼ି ବେକ ମୋଡ଼ି ଦେଲା । ଏଣେ ଅପ୍ସରୁଣୀ ଘୋରଗର୍ଜନ କରି ମରିଗଲା । ରଜାପୁଅ ବନସ୍ତକୁ ଯାଇ ରଜାଝିଅକୁ ଘୋଡ଼ାରେ ବସାଇ ଆପଣା ଦେଶକୁ ଘେନି ଆସିଲା । ଗାଁ ଖଣ୍ଡିଦୂର ଥାଉ, ରଜାଝିଅକୁ ଗୋଟିଏ ଡସ୍ଠଗଛମୂଳେ ବସାଇ କହିଲା ତମେ ଏଇଠି ବସିଥାଅ, ମୁଁ ଗାଁଠାରୁ ସଇନ ସାମନ୍ତ ପାଲିଙ୍କି ସୁଆର ପଲଟଣ ଆଣି ତମକୁ ଏଇଠୁ ବଜାହୋଇ ଘରକୁ ନେଇଯିବି । ଏହା କହି ରଜାପୁଅ ଘରକୁ ଗଲା । ରଜାଝିଅ ଯେଉଁ ଡସ୍ଠ ଗଛମୂଳେ ବସିଥିଲା ତାହା ଆଗରେ ଗୋଟିଏ କୂଅ; ସେ ନିକଟରେ ଗୋଟିଏ ଚମାର ଘର । ଚମାରଝିଅକୁ ମା କୂଅରୁ ପାଣି ଆଣିବାକୁ ପଠାଇଲା । ସେ କୂଅରେ ମାଠିଆ ପକାଇ ଭାଙ୍ଗିଦିଏ ଘରକୁ ଫେରିଯାଏ, ଏହିପରି ଶାଏ କି ଦୁଇଶ ମାଠିଆ ଭାଙ୍ଗିଲା । ଶେଷରେ ମା ଖପା ହୋଇ ଗୋଟାଏ ତମର ମାଠିଆ ଦେଲା । ଚମାରଝିଅ ତମମାଠିଆ କୂଅମୂଳକୁ ଆଣି ସେଠି ବସି କାନ୍ଦିଲା । ଏହା ଦେଖି ରଜାଝିଅକୁ ଦୟା ମାଡ଼ିଲା । ଚମାରଝିଅକୁ କହିଲା ମାଟିର ମାଠିଆ ଭାଙ୍ଗୁ ବୋଲି କି ତମର ମାଠିଆ ଭାଙ୍ଗିବୁ ? ଚମାରଝିଅ ରଜାଝିଅ ପାଖକୁ ଆସି ତାକୁ ତାହାର ପରିଚୟ ପଚାରିଲା । ରଜାଝିଅ ସବୁ କଥା କହିଲେ । ଏହିପରି କଥାବାର୍ତ୍ତା ହେଉ ହେଉ ଚମାରଝିଅ ରଜାଝିଅକୁ କହିଲା, ମତେ ଟିକିଏ ତମ ଝୁଣ୍ଟିଆ ଦିଅନ୍ତୁ, ଲଗାନ୍ତି କେମନ୍ତ ଦିଶନ୍ତି । ଝୁଣ୍ଟିଆ ନେଇ ଲଗାଉ ଲଗାଉ ରଜାଝିଅଠାରୁ ସବୁ ଅଳଙ୍କାର ନେଇ ଲଗାଇଲା । ରଜାଝିଅ ଓଲୁ ଅଣ୍ଟ ବୁଝି ପାରିଲା ନାହିଁ, ଶେଷରେ ରଜାଝିଅକୁ କହିଲା ତେମେ ମୋର ପିନ୍ଧାଲୁଗାଡ଼ୁ, କଂସାମୁଦି ପିନ୍ଧନ୍ତୁ କପଟ ଦିଶନ୍ତି ଦେଖନ୍ତୁ ।

ରଜାଝିଅ ସେହିପରି ହେଲା, ଚମାରଝିଅର ଲୁଗାପିନ୍ଧିଲା । ଏହିପରି ବେଶ ବଦଳହେଲାରୁ ଚମାରଝିଅ ରଜାଝିଅକୁ କୂଅପାଖକୁ ଡାକି ନେଇ ତାକୁ କୂଅକୁ ଠେଲିଦେଲା । ରଜାଝିଅ କୂଅରେପଡ଼ି ଗୋଟିଏ ପଦ୍ମଫୁଲ ରୂପରେ ରହିଲା । ଚମାରଝିଅ ରଜାଝିଅର ବେଶ ପିନ୍ଧି ଚଉଠ ଗଛମୂଳେ ବସି ରହିଲା । ଏଣେ ରଜାପୁଅ ସଇନସାମନ୍ତ ଆଣି ଦେଖେ ଯେ ରଜାଝିଅର ରୂପ ଆଗପରି ଅସୁନ୍ଦର ହୋଇଯାଇଛି କେତେ ଭାବିଦେଲା କିଛି ବୁଝିପାରିଲା ନାହିଁ; କାହାକୁ କିଛି ନ କହି ବାହା ହେଲା । ଚମାରଝିଅ ସେ ଦେଶର ରାଣୀ ହେଲା । ଏହିପରି କେତେଦିନ ଗଲା, ଏଥିମଧ୍ୟରେ ବୁଢ଼ାରଜା ମରିଗଲେ, ସେ ରଜାପୁଅ ରଜା ହେଲା । ଦିନେ ରଜା ବୁଲିବାକୁ ଯାଉଁଥିଲେ, ସେହି କୂଅପାଖରେ ପହଞ୍ଚିଲେ, ଅତି ସୁନ୍ଦର ପଦ୍ମଫୁଲଟିଏ ଦେଖି ତୋଳି ନେଇ ରାଣୀଙ୍କି ଦେଲେ । ରାଣୀ ବୁଝିଲେ ଯେ ଯେଉଁ କୂଅରେ ରଜାଝିଅଙ୍କୁ ପକାଇ ଦେଇଥିଲେ, ସେହି କୂଅରେ ଏ ପଦ୍ମଫୁଲ ଫୁଟିଥିଲା । ରଜାଝିଅ ଏ ପଦ୍ମଫୁଲ ହୋଇ ଫୁଟିଛି ଏହା ଜାଣିପାରି ସେ ଫୁଲଟିକି ଟିକିକରି ଛିଣ୍ଡାଇ ନଳାମୁହାଁକୁ ପକାଇଦେଲେ । କିଛିଦିନ ପରେ ରଜାଝିଅ ନଳାମୁହଁରେ ଲାଉଗଛଟିଏ ହୋଇ ଉଠିଲା । ବହୁତ ମାଡ଼ିଲା, ଫଳ ଯେ ଫଳିଲା ଅଗୋଚର (୧) ରଜା ଦିନେ ଗୋଟିଏ ଲାଉ ଭୂଜଣ କରିବାକୁ କହିଲେ । ରାଣୀ ଲାଉ ଭୂଜଣ ବସାଇଛନ୍ତି, ଲାଉ ଘଡ଼ା ବାହାନାରେ ଶବ୍ଦକଲା, 'ଘଡ଼ ଘଡ଼ ଲାଉ, ଚମାରୁଣୀ ହାତରେ କି ରଜାପୁଅ ଖାଉ ? ଏହିପରି ତିନିଚାରିଥର ହେଲା । ଚମାରଝିଅ ଶାଶୁକୁ ଡାକି କହିଲା ଦେଖ ଲାଉ କଣ କହୁଛି । 'ଘଡ଼ ଘଡ଼ ଲାଉ ରଜାପୁଅ ମୁଣ୍ଡ ନୁଆଁଣି ଖାଉ ।' ଶାଶୁ ଏହା ଶୁଣି ଲାଉକୁ ବାହ-ଅଚ୍ଛେ ଫୋପାଡ଼ି ଦେବାକୁ କହିଲେ, ରାଣୀ ଫୋପାଡ଼ିଦେଇ ନିଶ୍ଚିନ୍ତ

---

( ୧ ) ଅସଙ୍ଖ୍ୟ ।

ହେଲେ । ରଜାପୁଅ ଖାଇଲାବେଳେ ଲୁଣ ମାଗିବାରୁ ରାଣୀମା କହିଲେ, ଲୁଣ ଏପରି ଅମଙ୍ଗଳ କଥା କହିବାରୁ ଫୋପାଡଦେଲୁଁ । ଏହିପରି କେତେଦିନ ଗଲା, ସେ ଘରର ଲୁଣ ଆଉ କେହି ଖାଆନ୍ତି-ନାହିଁ । ଦିନେ ରଜା ବାହାରଅଡ଼େ ବୁଲୁଁ ଦେଖିଲେ ଯେ, ଗୋଟିଏ ଉତ୍ତମ ସୁନ୍ଦର ଝୁଲିଗଛ ହୋଇଛି, ତହିଁରେ ଗୋଟିଏ ଝୁଲିଫଳ ଫଳିଛି । ରଜାଙ୍କର ଝୁଲିଟି ଖାଇବାକୁ ଲୋଭ ହେଲା, ତୋଳି ଆଣି ଘରେ ଥୋଇଦେଇ ଗାଧୋଇ ଆସିଲେ । ଖାଇବା ସମୟରେ ଛୁରି ଲଗାଇ ଝୁଲିଟି ଯେପରି କାଟିଦେଇଛନ୍ତି, ସେହିପରି ଝୁଲିଭିତରୁ ସେ ରଜାଝିଅ ବାହାରିପଡ଼ିଲା !! ରଜା ଆଚମ୍ବିତ ହୋଇଗଲେ, ପଚାରିଲେ ତେମେ କିଏ ? ରଜାଝିଅ ଆପଣାର ପରିଚୟ ଦେଲା ଆଉ ଚମାରଝିଅ ଯାହା୨ କରିଥିଲା ସବୁ କହିଲା । ରଜାଝିଅକୁ ଗୋଟିଏ ଘରେ ଲୁଚାଇ କରି ରଖି ରଜା ରାଣୀମାଙ୍କ ପାଖକୁ ଯାଇ କହିଲେ, ବୋଉ ! ଆଜ ଗୋଟିଏ ସେ ଲୁଣରୁ ଭୁଜଣ କର । ନୂଆରାଣୀ ଏଥିପାଇଁ ମଙ୍ଗୁ ନ ଥାଏ, ରଜା ଏକ୍‌ଜିଦ କରିବାରୁ ଭୁଜଣ ରାନ୍ଧିବାକୁ ଗଲା । ରଜା ରାଣୀମାଙ୍କ ସହିତରେ ସେଠାରେ ବସିରହିଲେ, ଲୁଣ କଣ କହିବ ଶୁଣିବାକୁ । ଲୁଣ ଘଡ଼୨ ହୋଇଆସିଲା, ଅଗସର ଶବ୍ଦ କଲା, 'ଘଡ଼୨ ଲୁଣ, ଚମାରୁଣୀ ହାତେ କି ରଜାପୁଅ ଖାଉ, ରାଣୀ ଭୟରେ ଥରୁ-ଥାଏ ରଜା କିଛି ନ କହି ଚାଲିଗଲେ, ଦାଣ୍ଡଦୁଆରେ ଗୋଟାଏ ଝୋପର ଖୋଳାଇ, ରାଣୀଙ୍କି ଡକାଇଲେ, ତହିଁରେ ଧାନ କେତେ ସମାଇବ ଅନ୍ଦାଜ କରିବାକୁ । ରାଣୀ ବଡ଼ ମନକଷ୍ଟରେ ଝୋପର-ପାଖକୁ ଗଲେ, ପଛହିଁ ଲୁଖଣି ରଜାଭିତରକୁ ଠେଲି ଦେଲେ, କହିଲେ 'ଯା ଚମମାଟିଆରେ ପାଣି କାଢ଼ୁଥା' । ଉଲକଣ୍ଠା ଉପର କଣ୍ଟା ଛାଟଦେଲେ ମାଟି ଚଢ଼ାଇଦେଲେ ସେ ରଜାଝିଅକୁ ବାହା ହୋଇ ସୁଖରେ ଘର ଦୁଆର କଲେ, ମୁଁ ଗଲାକୁ କଥା ନ କହିଲେ, ମୋ କଥାଟି ସରିଲା ଇତ୍ୟାଦି ।

## ସାଧବବୋହୂ ଲୀଳାବତୀର କଥା ।

ଗୋଟିଏ ସାଧବଟିଏ, ତାହାର ସାତପୁଅ, ସାତବୋହୂ, ସବୁ ସାନ ବୋହୂଟିର ନାମ ଲୀଳାବତୀ । ହଳକର ଗୋଟିଏ ଯୋଗୀ ଭିକ ମାଗି ଆସିଥିଲା, ତାର କେମନ୍ତ ଲୀଳାବତୀ ଉପରେ ନଜର ପଡ଼ିଲା । ସେ ସାଧବଘୁଆରେ ଭିକପାଇଁ ଡାକୁଥାଏ, ସେ ଯେତେ ଭିକ ଯାଚିଲେ ତାହାର ହାତରୁ ନେଲା ନାହିଁ; କହିଲା ଯଦି ତମ ଘରର ସାନବୋହୂ ଭିକ ଦେବ ତ ନେବି, ନଇଲେ ବେକରେ ଛୁରୀମାରି ମରିବି । ତାଙ୍କୁ ଫେରାଇ ଦେବାର ନୁହଁ, ସମସ୍ତେ କହିଲେ ସାନବୋହୂ ଖିଡ଼କି ବାଟରେ ହାତ ଗଳାଇ ଭିକ ଦେଉ । ଏ ଯୋଗୀ ପଦମନ୍ତ୍ର ଜାଣେ, ଭିକନେଲାବେଳେ ଲୀଳାବତୀକି କଣ ପଦ କରିଦେଲା ଯେ, ଲୀଳାବତୀ ଯୋଗୀ ସାଙ୍ଗରେ କୁକୁର ହୋଇ ଗୋଡ଼ାଇଲା । ଘରେ ପହଞ୍ଚି ଯୋଗୀ ଲୀଳାବତୀକୁ ମଣିଷ କରି ତାକୁ ଘରେ ରଖିଲା, ଏଣେ ଲୀଳାବତୀର ବର ଆଉ ଦେଢ଼ଶୁରମାନେ ତାକୁ ଫେରାଇ ଆଣିବାକୁ କେତେ ଉପାୟ କଲେ । ପହିଲେ ବଡ଼ଦେଢ଼ଶୁର ଯୋଗୀ ପାଖକୁ ଗଲା । ଯୋଗୀ ପଦୁଅ ବୋଲି ଯୋଗୀ ଘରକୁ ଗଲା ନାହିଁ, ସେ ଗାଁରେ ଗୋଟିଏ ମାଲୁଣୀଘରେ ରହିଲା । ସେ ଗାଁରେ ଯେ ଗଲେକ, ସମସ୍ତଙ୍କୁ ଯୋଗୀ ମନ୍ତ୍ର ଜୋରରେ କାହାକୁ ପଶୁ, କାହାକୁ ପକ୍ଷୀ କରିନେଇଥାଏ, ଖାଲି ଯେ ମାଲୁଣୀକି, ଲୀଳାବତୀ ପାଇଁ ଫୁଲ ଗୁନ୍ଥି ଦେବ ବୋଲି ରଖିଥାଏ । ସାଧବପୁଅ ମାଲୁଣୀଘରେ ଥାନ୍ତୁ, ଯୋଗୀ ଫୁଲ ନେବାକୁ ଆସିଲା, ମନ୍ତ୍ରବଳରେ ଜାଣିଲା ଯେ ସାଧବ-ପୁଅ ସେଠିକି ଆସିଛି । ତାକୁ ମାଲୁଣୀଘରୁ ବାହାର କରିନେଇ

ଦାଣ୍ଡରେ ଗୋଟାଏ ନଡ଼ିଆ ଗଛ କରିଦେଲା, ତା ଘୋଡ଼ାକୁ ତାଳଗଛ କରିଦେଲା । ଏହାପରେ ଆଉ ଛ ଭାଇଯାକ ଲୀଳାବତୀଙ୍କ ଅଣିବାକୁ ଗଲେ, ସମସ୍ତେ ସେଇଥିରେ ନଡ଼ିଆଗଛ ହୋଇ ରହିଲେ । ଆଉ କିଏ ଅଛି ଯେ କିଏ ଯିବ, ସମସ୍ତେ ଭୂନତାନ୍ତ ହୋଇ ରହିଲେ । ବଡ ଭାଇ ଭାରିଯାର ଗର୍ଭ ହୋଇଥାଏ, ତାର ଗୋଟିଏ ପୁଅ ହେଲା । ପୁଅଟିକୁ ଚାରି ଛ ବର୍ଷ ହେଲାରୁ ତାକୁ ଅବଧାନ ପାଖରେ ପାଠ ପଢ଼ାଇଲେ । ପୁଅଟିର ନା ହୋଇଥାନ୍ତି ବଣିକେସନ । ବଣିକେସନ ଚାହାଳିରେ ପଢ଼ୁଚି, ହଠେନ ତାହାର ଖଡ଼ୀ ଗଡ଼ିଗଲା । ସେ ମାଗି-ବାରୁ, ଆଉ ପିଲାମାନେ ତାକୁ କହିଲେ, 'ଅଣବାପୁଅ ରେ ପଣ ଯାଉଚି ନା ଖଡ଼ୀ ଗଡ଼ିଗଲା ଦେ ବୋଲୁଚି' । ବଣିକେଶନ ତାର ବାପ କିଏ ଜାଣେ ନା, କି ଅନ୍ୟ ପିଲାମାନେ କେହି ଜାଣନ୍ତି ନାହିଁ । ଏଇଥି ଲାଗି ପିଲାମାନେ ତାକୁ ଏପରି କହିଲେ । ବଣିକେସନ ସେଦିନ ଚାହାଳିରୁ ଆସି ବଲେଇ ଜନ୍ମ ଷଣ' ମୁଷାମାନ୍ତି କଣ' ଏହିପରି ଗୋଟାଏ ଘରେ ଶୋଇଲା । କେତେଠାଇଁ କେତେ ଖୋଜିଲେ, କୋଉଠି ତାକୁ ପାଇଲେ ନାହିଁ । ତାର ମା କାନ୍ଦୁଣୀ ବାହୁନୁଣି ହୋଇ ତାକୁ ଖୋଜୁଥାଏ, 'ବଲେଇ ହୋଇଲା ମ୍ୟାଉଁ' ଦୁଧଭାତକର ଗୁଣ୍ଡିଏ ଖାଉଁ ପୁଅକୁ ଦେଖାଇ ଦେଉଁ ।' ବଲେଇକୁ ଦୁଧଭାତ ଖାଇବାକୁ ଦେଲେ, ବଲେଇ ଖାଇସାରି ଯୋଉଘରେ ବଣିକେସନ ଶୋଇ-ଥିଲା, ସେ ଘର କବାଟରେ ଲାଙ୍ଗୁଡ଼ ମାରିଦେଲା ଯେ, କବାଟ ଫିଟି-ଗଲା । ମା ବଣିକେସନର ମୁଣ୍ଡ ଉପରେ ବସିଲା, ଖୁଡ଼ୀମାନେ ଗୋଡ଼ ତଳେ ବସିଲେ, ପଚାରିଲେ କାହିଁକି ରୁଷିଚୁ କହ, ହଜିଥିଲେ ଖୋଜିଦେବୁ, ଭାଙ୍ଗିଥିଲେ ଗଢ଼ି ଦେବୁ, କାହିଁକି ରୁଷିଚୁ କହ । ପୁଅ କହିଲା, ମୋ ବାପ ଦାଦିମାନେ କାହାନ୍ତି କହ । ମା କହିଲା ତୁ ସେଥିରୁ କି ପାଇବୁ ? ବାପ ଦାଦି ତ ସାତ ଖୁଡ଼ୀଙ୍କ ଅଣବାକୁ ଗଲେ, ସେଇଥିରେ ରହିଲେ । ପୁଣି ପୁଅ ଜିଦ କରିବାରୁ ମା ଯୋଗୀର

କଥାଯାକ ତାକୁ କହିଲା । ସବୁ କଥା ଶୁଣି ପୁଅ କହିଲା, ମୁଁ ଯିବ, ବାପ ଦେବରକାଙ୍କୁ ମୁକ୍ତ କରି ଆଣିବ । ସମସ୍ତେ ମନା କରୁଥାନ୍ତି, ସେ ଏକା ଯିବାକରି ବାହାରିଲା । ଘୋଡ଼ାଶାଳକୁ ଯାଇ ଦେଖିଲା ଯେ, ଗୋଟିଏ ମଡ଼ିଆ ଘୋଡ଼ାଟିଏ ହସୁଛି, ତାକୁ ଆଣିଲା, ଗ୍ରନ୍ଥ ଘେନିଲା, ମା ଖୁଡ଼ୀ ସମସ୍ତଙ୍କୁ ଦଣ୍ଡବତ କରି ଯୋଗୀଗାଁକୁ ଗଲା, ସେ ମାଲୁଣୀ-ଘରେ ପହଞ୍ଚିଲା । ମାଲୁଣୀ ଯାକୁ ସେଠାରେ ରହିବାକୁ ମନା କରୁ-ଥାଏ; ଏ କହିଲା ତୁ ମୋ ଘୋଡ଼ାକୁ ନେଇ ଆଉ କୋଉଠି ବାନ୍ଧ ଅ, ମୁଁ ତୋ ଘରେ ମାଇପି ବେଶ ହୋଇ ରହୁଛି । ଯୋଗୀ ଯଦି ପଚାରିବ କହିବୁ ଏ ମୋର ଝିଅଟା, ମୁଁ ତ ବୁଢ଼ୀ ହେଲିଣି, ଯଦି ମରିଯିବ ନୂଆ ସାନ୍ତାଣୀଙ୍କ ପାଇଁ ଫୁଲ କିଏ ଗୁନ୍ଥିବ ? ଏଯୋଗୁଁ ଯାକୁ ଆଣି ରଖିଛି । ବଶିକେସନ ଗୁଡ଼ାଏ କଳା ବୋଳି ହେଲା, ଖଡ଼ୁ ଶାଢ଼ୀ ପିନ୍ଧି ଗୋଟିଏ ସ୍ତ୍ରୀରୂପ ଧରିଲା, ତା ଘରେ ରହିଲା । ଯୋଗୀ ଆସିଲା, ମାଲୁଣୀଠାରୁ ଫୁଲ ନେଇଗଲା, ବଶିକେସନକୁ ମାଲୁଣୀର ଝିଅଟା ବୋଲି ବୁଝିଲା । ଏହିପରି ଥାଏ, ଦିନେ ବଶିକେସନ ମାଲୁ-ଣୀକୁ କହିଲା ମାଉସି ! ମୁଁ ଖଣ୍ଡିଏ ଫୁଲ ଗୁନ୍ଥନ୍ତି ? ମାଲୁଣୀ କହିଲା ନାହିଁରେ ପୁଅ ଅସୁନ୍ଦର ହେଲେ ଯୋଗୀ ଆଉ ମତେ ରଖିବ ନାହିଁ । ଏ କହିଲା ସୁନ୍ଦର ହେଲେ ନେଇଯିବ, ଅସୁନ୍ଦର ହେଲେ ଫୋପାଡ଼ି ଦେଇଯିବ । ବଶିକେସନ ଯୋଡ଼ ଫୁଲ ଖଣ୍ଡି ଗୁନ୍ଥିଲା ସେ ବଡ଼ ସୁନ୍ଦର ହେଲା, ମାଲୁଣୀ ତାକୁ ନେଇ ଲୀଳାବତୀକୁ ଦେଲା । ବଶି-କେସନ ଯେ ଫୁଲମାଳରେ ଖଣ୍ଡିଏ କେତକୀପାଖୁଡ଼ାରେ ଭାଷା ଲେଖି ଗୁନ୍ଥିଥାଏ । ଲୀଳାବତୀ ଦେଖୁ ଦେଖୁ ସେ ଭାଷାଖଣ୍ଡିକ ଖସିପଡ଼ିଲା, ପଢ଼ି ଦେଖେ ଯେ, ତାର ପୁରୁଷ ବଶିକେସନ ତାକୁ ନେବାକୁ ଆସିଛି । ଯୋଗୀର ଜୀବନ କୋଉଠି ଅଛି କଥାରେ ୨ ତାକୁ ପଚାରି କହିବାକୁ ଲେଖିଛି । ମନକଥା ମନରେ ଥାଏ, ଦିନେ ଲୀଳାବତୀ ଯୋଗୀ ସଙ୍ଗେ କଥାବାର୍ତ୍ତା କରୁ ୨ ପଚାରିଲା ହେ । ତମେ ଯଦି

ମରିଯିବ, ମତେ କିଏ ପୋଷିବ ? ତେବେ ସିନା ମୋତେ ଅନାଥ କରି ଯିବ । ଯୋଗୀ କହିଲା ମୁଁ କାହିଁ ସହଜରେ ମରିବି ? ଦରିଆ ଭିତରେ ସାତତାଳ ପାଣି, ସାତତାଳ ପଙ୍କ, ପଙ୍କ ଭିତରେ ଗୋଟିଏ ଫରୁଆ; ତା ଭିତରେ ଗୋଟିଏ ସାନ ଫରୁଆ, ତା ଭିତରେ ବଗଟି ଅଛି, ତାକୁ ଯଦି କିଏ ଆଣିବେକ ମୋଡ଼ି ଦେବ ତେବେ ମୋ ପ୍ରାଣ ଯିବ । ଦରିଆ ଭିତରକୁ ଫେରି କିଏ ଯିବ ? ମାଛ, ମଗର, କୁମ୍ଭୀର, ଖାଇଯିବେ । ଯଦି କିଏ ଏ ଗାଁପାଖ ଠାକୁରାଣୀଙ୍କ ଅନୁସରଣ କରି ତାଙ୍କ ହାତରେ ଯେ ବାରହାତ ଖଣ୍ଡା ଅଛି, ତାକୁ ପାଇବ ତେବେ ସେ ଖଣ୍ଡା ହାତରେ ଥିଲେ ମାଛ, ମଗର, କିଛି କରିବେ ନାହିଁ । ଲୀଳାବତୀ ଏସବୁ କଥା ବଣିକେସନ ପାଖକୁ ଲେଖି ପଠାଇଲା । ବଣିକେସନ ସେ ଠାକୁରାଣୀଙ୍କ ପାଖରେ ସାତ ରାତି ସାତ ଦିନ ଗୁହାରିଥି ପଡ଼ିଲା । ଠାକୁରାଣୀ ପ୍ରସନ୍ନ ହୋଇ ତାକୁ ଅପଣା ହାତରୁ ଖଣ୍ଡା ଦେଲେ; କହିଲେ ଏ ଖଣ୍ଡା ସବୁବେଳେ ହାତରେ ରଖିଥିବୁ, ଦରିଆରେ ବୁଡ଼ିଲାବେଳେ ଯଦି ମାଛ, କୁମ୍ଭୀର, ମଗର ଆସିବେ, ତେବେ ଲୁଣ ଭାଜି ନେଇଥିବୁ ଯେ, ଲୁଣ ବୁଣିଦେଲେ ସେମାନେ ତାକୁ ଖାଇଲାଗିବେ, ପାଖକୁ ଆସିବେ ନାହିଁ । ଠାକୁରାଣୀଙ୍କଠାରୁ ଏହିପରି ଆଜ୍ଞା ପାଇ ବଣିକେସନ ମାଲୁଣୀ ପାଖକୁ ଗଲା, ତାକୁ ଏସବୁ କଥା କହି ଅଣ୍ଟିରେ ଲୁଣଗୁଡ଼ିଏ ନେଇ ଦରିଆ କୂଳକୁ ଗଲା । ଦରିଆ ମଝିରେ ପଶି ଫରୁଆଟି ଆଣିଲା, ଠାକୁରାଣୀଙ୍କ ଖଣ୍ଡା ଥାଏ ହାତରେ, କେହି ଜୀବଜନ୍ତୁ କିଛି କଲେ ନାହିଁ । ଫରୁଆଟି ଆଣି ସେ ମାଲୁଣୀ ଘରକୁ ଫେରି ଆସିଲା, ତା ଘୋଡ଼ା ଉପରେ ଚଢ଼ି ଯୋଗୀ ପୁରକୁ ଗଲା । ଦରିଆ ଭିତରୁ ଫରୁଆଟି ଆଣିଲାବେଳୁଁ ଯୋଗୀର ଜର ହୋଇଥାଏ, ଯୋଗୀକି ଦାଣ୍ଡକୁ ଡାକିଲା, ତାକୁ ସେ ଫରୁଆଟି ଦେଖାଇଲା ଯୋଗୀ ସେତେ ନେହୁରି ନମସ୍ତ ହୋଇ ସେ ଫରୁଆଟି ମାଗିଲା, ତା ଶୁଣୁଚି କିଏ ? ବଣିକେସନ କହିଲା ଆଗେ ମୋ ବା

ଆଉ ଛ ଭାଇଙ୍କୁ ଦେ, ସେମାନଙ୍କ ଘୋଡ଼ା ଦେ । ଯୋଗୀ ସେମାନଙ୍କୁ ନିଜରୂପ ଦେଲା । ମାଲୁଣୀଘର ବଂଶ, ଧୋବା ଘର ବଂଶ ଆଉ ସେ ଗାଁର ଯେତେଲୋକଙ୍କୁ ଯୋଗୀ ଗଛ ବୃକ୍ଷ କରି ବନ୍ଦ କରିଥିଲା, ସେମାନଙ୍କୁ ସମସ୍ତଙ୍କୁ ମନୁଷ୍ୟ କଲା । ଯୋଗୀ ବଣିକେସନଠାରୁ ପଣ୍ଡୁଆଟି ନେବ ବୋଲି ବଡ଼ ଚେଷ୍ଟ ହେଉଥାଏ । ବଣିକେସନ କହିଲା ତୁ ଏଠାରେ ନିଆଁ କରି ମୁଁ ଦେବି । ଯୋଗୀ ନିଆଁ ଥରସଏ ଲଗାଇଲା ବଣିକେସନ ପଣ୍ଡୁଆଟି ଫିଟାଇ ତା ଭିତରୁ ବଟଟିକୁ ବାହାର କରି ସମସ୍ତଙ୍କ ଆଗରେ ବେକ ମୋଡ଼ ଦେଇ ନିଆଁରେ ପକାଇଦେଲା । ଯୋଗୀ ମୁଠିଏ ଲହୁବାନ୍ତି ସେହିକ୍ଷଣ ମରିଗଲା । ବଣିକେସନ ବାପ ଭାଇ ସାତଭାଇ ଆଉ ଲୀଳାବତୀକୁ ନେଇ ଘରକୁ ଆସିଲା । ଆନନ୍ଦରେ ଘର ଦୁଆର କଲା, ମୁଁ ଗଲିକୁ କଥା କହିଲି ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।



## ଅଁଳାକଣ୍ଢେଇ କଥା ।

ଦୋଟି ମୂଲିଆ ମୂଲିଆଣୀ ଥାନ୍ତି, ମୂଲିଆଟି ରଜାଘରୁ ମୂଲ ଲାଗି ଧାନ ଗଉଣୀଏ ଅଣେ, ତାକୁ କୁଟି ଖାଇ ଦିନ କଟାନ୍ତି । ଦିନକର ଅଁଳାକଣ୍ଢେଇ ବିଭା ଥିଲା, ଗାଁ ଭିତରେ ସମସ୍ତେ କିଣିଲେ, ମୂଲିଆଣୀଟି ବି ଦିନକର ମୂଲଧାନ ଗୌଣୀକ ଦେଇ ଗୋଟିଏ କିଣିଲା । ଛଙ୍କା ପୁନା ପାଙ୍ଗରେ ଧାନ ଗଉଣୀକ କୋଉଠି ସରି (୧) ? ସମ୍ଭୁ- କର ମୂଲିଆଣୀଟି ଯୋଉ କଣ୍ଢେଇଟି କିଣିଥିଲା ତା ସବୁଠାରୁ ଅସୁନ୍ଦର ଦିଶୁଥିଲା । କଣ୍ଢେଇଟିକୁ ଅଣେ ମୂଲିଆଣୀ ତା କୁଡ଼ିଆ ଘରେ

(୧) ସମାନ ।

ଗୋଟିଏ ଠଣାରେ ରଖିଦେଇଥାଏ । ତାର ଗେରସ୍ତ କାମ ସାରି ଘରକୁ ଆସି ଦେଖିଲା ଯେ, ଖାଇବା ପିଇବାକୁ କିଛି ନାହିଁ, ମୂଳ ଧାନରେ ଅଁଳାକଣେଇଟିଏ ଜଣା ହୋଇଛି । ଭୋକରେ ପେଟ ଜଳୁଛି, ଭାରିଯାକୁ ନିସ୍ତୁକ ମାଡ଼ ଚଢ଼ାଇଲା, ଉପାସ ଭୋକରେ ଫେର କାମକୁ ଗଲା, କାମରୁ ଆସି ଯାହା ମିଳିଲା ଖାଇ ଗେରସ୍ତ ଭାରିଯା ଦୁହେଁ ଘରେ ଶୋଇଲେ । ରାତି ପହରେ ହୋଇଛି ଅଁଳାକଣେଇ ଡାକ ପକାଇଲା, 'ଲୋ କନ୍ଧୁଣୀଖାଇ, ମୁଁ ହଗିଯିବି ଉଠୁ ।' ମୂଳଆଣୀ ଉଠୁ ନ ଥାଏ, ଅଁଳାକଣେଇର ଡାକ ଉପରେ ଡାକ ପକାଇବାରୁ, ବିରକ୍ତ ହୋଇ କହିଲା ତୁ ପଛକେ ଏ ଘର କଣରେ ହଗ୍, ଆଉ ପାଟି କର ନା, କାଲେ ତା ଗେରସ୍ତ ନିଦ ଭାଙ୍ଗିଯିବ, ଏହି ଭୟରେ ଏପରି କହିଲା । ଅଁଳାକଣେଇ ଯେ ଘର କଣରେ ହଗିଲା । ଫେରି ଶୋଇଛନ୍ତି, ରାତି ଦୁପହର ହେଲାଣି, ଅଁଳାକଣେଇ ଉଠିଲା, ଫେରି ସେହିପରି ଡାକ ପକାଇଲା । ମୂଳଆଣୀ କହିବା ଅନୁସାରେ ଘର କଣରେ ହଗିଲା । ରାତି ଶେଷ ପହରେ ଯେତେବେଳେ ଅଁଳାକଣେଇ ଉଠି ପୁଣି ସେହିପରି ଡାକିଲା, ମୂଳଆଣୀ ବିରକ୍ତ ଭାରି ବିରକ୍ତ ହୋଇ କହିଲା ମୋ କାନରେ ହଗ । ସତକୁ ସତ କଣେଇମଣି ଆସି ତା କାନରେ ହଗିଦେଇ ଗଲା । ଏହାପରେ ରାତି ପାହିଲା, ସକାଳୁ ଉଠି ମୂଳଆଣୀ ଦେଖେ ଯେ ତା କାନରେ ଘୁଅଘୁଅ କିଛି ନାହିଁ, ସୁନା ଗୁଡ଼ାଏ ! ଘର କଣକୁ ଅନାଇ ଦେଖେ ଯେ କେତେ ସୁନା ଜମା ହୋଇଛି । ଆନନ୍ଦର ଆଉ ସୀମା ରହିଲା ନାହିଁ । ସ୍ୱାମୀକି ଡାକିଆଣି ସବୁ ଦେଖାଇଲା । ଯାହା ଖରଚ କରିବାର କଲେ, ବାକି ମାଠିଆରେ ପୂରାଇ ଘର ତଳେ ପୋତିରଖିଲେ । ଏହିପରି ସବୁଦିନେ କରନ୍ତି, ସେ ମୂଳିଆଣୀର ସେ ଗାଁରେ ଗୋଟିଏ ସଙ୍ଗାତ ଥିଲା, ସଙ୍ଗାତ ଦିନେ ତା ଘରକୁ ଆସିଲା, ଦେଖିଲା ସାଙ୍ଗଘରେ ସମ୍ପତ୍ତି ମାଡ଼ିପଡ଼ୁଛି ପଚାରିଲା, ଏତେ ସମ୍ପତ୍ତି କୁଆଡ଼ୁ ହେଲା ? ବୁଝିଲା ଯେ ସେଦିନ ସଙ୍ଗାତ ଯେ ଅଁଳାକଣେଇ କଣିଥିଲା

ତାକୁ ସମସ୍ତେ ଅସୁନ୍ଦର ବୋଲି କହୁଥିଲେ, ସେ ସୁନା ହେଲେ । ହ ସଙ୍ଗାତଙ୍କର ଭାରି ମନ ମିଳେ, ହ ହନପାଇଁ ସେ ସଙ୍ଗାତଠାରୁ ଅଁଳାକଣ୍ଢେଇକି ମାଗିନେଲା । ଢେଣ୍ଢେଇକି ନେଇ ଘରକୁ ଯାଉଥ, ବାଟରେ ଗୋଟାଏ ବାଇଗଣ କିଆରି ପଡ଼ିଲା । ଅତି ସୁନ୍ଦର କଅଁଳିଆ ବାଇଗଣଟିଏ ଦେଖି ତାକୁ ଟୁଣ୍ଢାଇ ନେଇ ଖାଇଲା । ଘରେ ପହଞ୍ଚି ଅଁଳାକଣ୍ଢେଇକି ଉତ୍ତମ ସ୍ଥାନରେ ରଖିଦେଲା । ମନ ଖାଲି ଛଟପଟ ହେଉଥାଏ କେମନ୍ତ ରାତି ହେବ । ରାତି ହେଲା, ଝିଅଟି ରନ୍ଧାବଢ଼ା କରି ଖାଇପିଇ ଶୋଇଲେ । ରାତି ପହରକଠେଇଁ ଅଁଳାକଣ୍ଢେଇ ବାଇଗଣଚୋରଣୀ' ବୋଲି ହୁରି ପକାଇଲା । ଏ ସ୍ତ୍ରୀଲୋକଟିର ଗେରସ୍ତ ଉଠିବସି କାବା ହୋଇ କହିଲା, କାହିଁ ଗୋଟାଏ କଣ ଅଛି, ବାଇଗଣଚୋରଣୀ ବୋଲି ଡକାପାଡ଼ୁଛ, ଏ ରଜା ଦେଶ, ରଜା ଶୁଣିଲେ ଏହିକ୍ଷଣି ମୋ ହୁରୁମତ ନେବେ, ଏହା କହି ତା ଭାରିଯାକୁ ଠାଙ୍କେ ଠେଲିଲା । ଅଁଳାକଣ୍ଢେଇ ଗୁଣ୍ଡିବାର ଜାଣି ନାହିଁ, ଡାକୁଥାଏ 'ଲୋ ବାଇଗଣ ଚୋରଣୀ ମୁଁ ହଗିଯିବି ଉଠ' । ଏ ସ୍ତ୍ରୀଲୋକଟି ଉଠି ତାକୁ ଘରର ଏକ କଣରେ ହଗାଇଲା । ରାତି ଦ୍ୱିତୀୟ, ତୃତୀୟ ପହର ବି ସେହିପରି ଘରର ଆଉ ଦୁଇକଣରେ ହଗାଇଲା, ଶେଷ ପହରକୁ ଆପଣା ଲୁଗା କାନିରେ ହଗାଇଲା । ସକାଳୁ ଉଠି ଗେରସ୍ତକୁ ସବୁ ଦେଖାଇଲା । ସୁନାମୁଣ୍ଡା ଦେଖି ଗେରସ୍ତର ଆଖି ଝଲକି ପଡ଼ିଲା । ଭାରିଯାକୁ କେତେ ଗେଲ କରି କଥା କହିଲା; କାଲି ରାତିରେ ମାରିଥିବାରୁ ପିଠି ଆଉଁସି ଦେଲା । ଅଁଳାକଣ୍ଢେଇକି ହ ହନ ରଖି, ଏମାନେ ସେ ମୁଲୁକଟିକୁ ଫେରାଇ[redacted] ଅସିଲେ । ସେ ଅଁଳାକଣ୍ଢେଇକି ନେଇ ଘରଦୁଆର କଲା, ପକ୍କାକୋଠା କଲା, ଖୁବ ସୁଖରେ ରହିଲା, ମୁଁ ଗଲିକୁ କଥା କହିଲି ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।

—————

## ବୁଦ୍ଧିମତୀ ସାଧବଝିଅର କଥା ।

ଗୋଟିଏ ସାଧବଝିଅ ଧୂଳିଘର କରି ଖେଳୁଚି, କଣ୍ଢେଇ କରୁଛି ପାଉଛି । କେଉଁ କେତେକ ହାତରେ ଧରି ଚଅଁର ଥାଏ କହୁଥାଏ, 'କେଡ଼ାବେ ମରି' କେଡ଼ାକେ ଚରି, କେଡ଼ାକେ ଘରଦୁଆର କରି, କେଉଁଠି କେତେକ ବେଉନ୍ତ ପରିଲି ସୁନାସମ୍ଭେ ସୁନ କଳଶ ଠେଉ, ରଜାପୁଅ ସେହିବାଟେ ଘୋଡ଼ାଦଉଡ଼ କରୁଥିଲା, ସାଧବଝିଅର କଥା ଶୁଣି ତାକୁ ପଚାରିଲା, କେଉଁଠି କେଡ଼ାବେ କପର ଏ କଥ ସବୁ କରିବୁ ? ଏ କହିଲା ବୁଦ୍ଧି ଥିଲେ ସବୁ ହୋଇପାରେ । ରଜାପୁଅ ଏହା ଶୁଣି କିଛି ନ କହି, ଘୋଡ଼ାଦଉଡ଼ ବନ୍ଦ କରି ଘରକୁ ଗଲା, ଗୋଟିଏ ଘର ତହିଁରେ ମୂଷାମାଟି କଣେ ବଲେଇ ଚୂହ ଖଣେ ସେଇଘରେ ଯାଇ ଶୋଇଲା । ଖାଇଲା ପିଇଲାବେଳକୁ ପୁଅକୁ ଖୋଜାଗଲା, ରାଣୀ କହିଲେ ଆଜି କାହିଁକି ଏତେବେଳଯାଏ ପୁଅ ଆସି ନାହିଁ ? ସମସ୍ତେ ଗଲେ ଖୋଜିବାକୁ, ଅନ୍ଧରୁ ସନ୍ଧ ଖୋଜିଲେ, କୋଉଠି ପାଇଲେ ନାହିଁ । ବଲେଇ କହିଲା 'ମେଉଁ ମଉଁ ଦୁଧଭାତ କରି ଚୁଣ୍ଡିଏ ଖାଉ ପୁଅକୁ ଦେଖାଇଦେଉଁ ।' ରାଣୀ କହିଲେ ମରି ନାଅଁ ଲଗ ଟା, ସବୁ ଦ[illegible]ରୁ ଖାଉଚୁ ଆଜି କଣ ନ ଖାଇଲେ ପୁଅକୁ ଦେଖାଇବୁ ନାହିଁ । [illegible]ଇ କହିଲା ସବୁଦିନେ ଖାଏଁ ଅଇଁଠାଭାତ, ଆଜି ଖାଇବି ହାଣ୍ଡିରୁ ଭାତ । ବଲେଇକି ହାଣ୍ଡି ରୁ ଭାତଗଣ୍ଡାଏ ବାଢ଼ିଆଣି ଦୁଧ ଗୋଳାଇ ଖାଇବାକୁ ଦେଲେ । ବିଲେଇ ଖାଇଲା, ଲାଙ୍ଗୁଡ଼କୁ ଛିଡ଼ାକରି ମଉଁ ହୋଇ ଆଗେ ବାହାରିଲା । ଯୋଉଘରେ ରଜାପୁଅ ଶୋଇଚି, ସେ

ଘର କବାଟରେ ଲଙ୍ଗୁଡ଼ ମାରିଦେଲା ଯେ, କବାଟ ଫିଟିଗଲା । ରଜା ରାଣୀ ସେ ଘର ଭିତରେ ପଶିଗଲେ, ମା ଗୋଡ଼ତଳେ ବସିଲା, ବାପ ମୁଣ୍ଡଉପରେ ବସିଲା, କହିଲେ ହଜିଥିଲେ ଖୋଜିଦେବୁଁ, ଭାଙ୍ଗିଥିଲେ ଗଢ଼ିଦେବୁଁ, କାହିଁକି ରୁଷିଚୁ କହ । ରଜାପୁଅ କଥା କହୁ ନ ଥାଏ । ମା ବାପ ଲଗେଇ ଲଗେଇ ଦେଢ଼ବେଳ ପହରେ କଥା କହିଲା ! କହିଲା ତେମେ ଦହେଁ ସତ୍ୟକର, କହିବି କାହିଁକି ରୁଷିଚି । ମା କହିଲା ମାର ପୁଅର କି ସତ୍ୟ ? ବାପ କହିଲା ବାପର ପୁଅର କି ସତ୍ୟ ? ପୁଅ ଏକଜିଦ୍ ଲଗାଇଲା ହୋଉଡ଼, ମା ବାପ ସତ୍ୟ କଲେ । ପୁଅ କହିଲା ମୁଁ ସାଧବ ଝିଅକୁ ବିଭା ହେବି । ମା ବାପ କହିଲେ ଅମ ସମାନ ବନ୍ଧୁ ହେବ, ତୋ ସମାନ କନ୍ୟା ହେବ, ତେବେ ଯାଇ ବିଭାଘର, ଏ କଥା ଛାଡ଼ ଅଉ କଣ କହ । ପୁଅ କହିଲା ମୋର ଅଉ କିଛି କଥା ନାହିଁ, ମୁଁ ସଧବ-ଝିଅକୁ ବିଭା ନ ହେଲେ ପ୍ରାଣ ହରାଇଦେବି । ରଜା ନାଚାର ହୋଇ ହଁ ଭରିଲେ । ବନ୍ଧୁମାନଙ୍କ ଘରକୁ ନିମନ୍ତ୍ରଣ ଗଲା, ଘୁମୁଣ୍ଡଅ ବନ୍ଧା ହେଲା, ବେଦୀ ତୋଳା ହେଲା; ମହାସମାରୋହରେ ବିଭାଘର ହେଲା ।

ରଜାପୁଅ ତହିଁ ଆରଦିନ ସକାଳେ ସାଧବଝିଅ ପାଟଭେଣିଆ କାନରେ କଉଡ଼ି କଡ଼ାଏ ବାନ୍ଧିଦେଇ ତାର ଧାଈସାଙ୍ଗରେ ତାକୁ ଏକ ବନ-ସ୍ତରେ ସ୍ଥଅ ଭିତରେ ନେଇ ଛାଡ଼ି ଅସିଲା । ସାଧବଝିଅକୁ ନିଦ ଲାଗିଥାଏ କିଛି ଜାଣିପାରିଲା ନାହିଁ । ନିଦ ଭାଙ୍ଗିଗଲାରୁ ଦେଖେ ଯେ କେହି ନାହାନ୍ତି ଅଗନାଗନ ବନସ୍ତ ଭିତରେ ସେ ଏକା, ଅଉ ତା ଧାଈ ଅଛନ୍ତି, କଉଡ଼ି କଡ଼ାଏ କାନରେ ବନ୍ଧା ହୋଇଚି । ତାର ଦୁଃଖକଥା ଛବୁ ମନେ ପଡ଼ିଲା, ଧାଈକୁ କିଛି କହିଲା ନାହିଁ, ସେ ବନସ୍ତରେ [redacted]ଏ କୁଡ଼ିଆ କରି ରହିଲା । କାନରେ ଯେଉଁ କଉଡ଼ି କଡ଼ାକ ଥିଲା ତାକୁ ଧାଈକି ଦେଲା ଲିଅ କିଣି ଅଣିବାକୁ । ଧାଈ ଲିଅ ଅଣିଲାରୁ ତାକୁ କହିଲା ନେ ଯାକୁ ବଣ ଭିତରେ ଚୋଟିଏ ପଦା ଯେଗାରେ ବୁଣିଦେ, ମୟୂର ଖାଇବାର ପରି ଝାଡ଼ିଦେଇ ଯିବେ । ତହିଁ ଆରଦିନ ପହିଗୁଡ଼ିକ

ଗୋଟେଇ ଅଣିଲେ, ସାଧବଝିଅ ସେ ପଝୀରେ ପଙ୍ଖା ବୁଣି ଧାଈକୁ ବିକବାକୁ ଦେଲା,ଧାଈ ବିକ ଟଙ୍କା ଅଣିଲା । ଏହିପରି ସବୁଦ୍ରିନ କରି୨ ସେ କୁଡ଼ିଅରେ କୁଡ଼ିଏ ଟଙ୍କା ହେଲା । ସାଧବଝିଅ କହିଲା, ଧାଈ ବେଠିଆ ଡାକ ଅଣ, ଏ ଲଟା କଟିବେ । ଧାଈ ବେଠିଆ ଡାକ ଅଣିଲା ସେ ସବୁ ଲଟା କାଟିଲେ । କୋଠା ତୋଳଡଲ, ପୋଖରୀ ଖୋଳାଲେ, କୂଅ ବସାଇଲେ । ସାଧବଝିଅ ହେଉଠୁ ବଣିଆ ଡକାଇ ଅଳଙ୍କାର ଗଢ଼ାଇଲା; ରୁପାବାସନ ସାରେ କଲା, ସୁନାବାସନ ସାରେ କଲା, ରୂପାଦୀପ, ସୁନାଦୀପ, ରୂପା ପିଲସଜ, ସୁନା ପିଲ-ସଜ କଲା । ସବୁ କରିସାରି ଧାଈକି କହିଲା, ଯା କେଉଁଠାରୁ କନ୍ଥା ଅଡ଼ୁ କେଳୁଣୀ ସଜ ଅଣିବୁ । ଧାଈ କେଳୁଣୀ ସଜ ଅଣିଲା, ସାଧବ ଝିଅ କେଳୁଣୀସଜ ସବୁ ପିନ୍ଧିଲା, ଗୋଟିଏ ଚକଅ ହାର ବେକରେ ଲଗାଇଲା; ଚା ସ୍ୱାମୀଘର ଯୋଉଠି, ଗଲା ସେଇଠିକି ଭିକ-ମାଗିବାକୁ । ସମସ୍ତେ ଭିକ ଦେଲେ; କହିଲେ କେଡ଼େ ସୁନ୍ଦର କେଳୁଣୀଟିଏ ଅସିଚି । ସେ ରଜାପୁଅ ଅଉ ଗୋଟିଏ ବାହାହୋଇଥାଏ ସେ କହିଲା ମୁଁ ଥିକଏ କେଳୁଣୀକି ଦେଖନ୍ତି ? ନଅରଭିତରୁ ଜଳା-ବାଟେ କେଳୁଣୀକି ଦେଖିଲା । କେଳୁଣୀ ବେକରେ ଯୋଉ ଚକଅ ହାରଟି ଥିଲା ତାକୁ ଦେଖି ନୂଆବୋହୂଙ୍କର ବଡ଼ ଲୋଭ ହେଲା; ରଜା-ପୁଅକୁ କହିଲା ମତେ ସେ ହାରଟି ଦିଅଣଦିଅ । ରଜା କେଳୁଣୀକି ସେ ହାରଟିକି କିଣିବାକୁ ମାଗିଲାରୁ ସେ ନାହିଁକଲା, ନୂଆବୋହୂ ଏକ ଜିଦ୍ ଲଗାଇଲେ ଯୋଉଠୁ, ରଜାପୁଅ କେଳୁଣୀକି କହିଲା, ମତେ [redacted]ଲାର ପନ୍ଦରଦିନପାଇଁ ଦେଇଥା, ମୁଁ ତତେ ଫେରାଇଦେବି, [redacted]ୀ ନାହିଁ୨ କରୁଥିଲା, ରଜାପୁଅ ଯାଉଁ ଭାରି ଜିଦ୍ ଲଗାଇଲା ସାଧବଝିଅ କହିଲା,ହଉ ଭଲଲୋକ ଡାକ, ମୁଁ ଭଲଲୋକଙ୍କ ଅଗରେ ତମକୁ ହାର ଦେବି । ଭଲଲୋକ ଅସିଲେ, ସାଧବଝିଅ କହିଲା, ତେମେମାନେ ସାକ୍ଷୀ ଥାଅ, ଏ ହାର ନଉଚନ୍ତି, ପନ୍ଦର ଦିନରେ

ଫେରାଇଦେବେ, ନ ଦେଲେ ସ୍ବାଙ୍କୁ ମୁଁ ସାଙ୍ଗରେ ନେଇଯିବ । ସମସ୍ତେ ସାକ୍ଷୀ ରହିଲେ, ସାଧବହିଁଅ ହାର ଦେଇଗଲା । ସାଧବହିଁଅ ଗୋଟିଏ ମୂଷା ପୋଷିଥାଏ, ମୂଷାକୁ କହିଲା ହଇରେ ମୂଷାଭୁ ଯାହାର ଲୁଣ ଖାଉ ତାର ଗୁଣ କରୁଚି ? ମୂଷା କହିଲା ତାହାର ଗୁଣ କରିବ ନାହିଁ, ଆଉ କାହାର କରିବ ? ସାଧବହିଁଅ ମୂଷାକୁ କହିଲା ତୁ ଏ ଦେଶ ରଜାଘରକୁ ଯିବୁ, ରଜାପୁଅ ଭାରଯା ଶୋଇଥିବ .ତା ବେକରେ ଯୋଡ଼ ଚକଆ ହାରଅଛି ତାକୁ କାଟି ଘେନ ଆସିବୁ । ମୂଷା ଗଲା ନୂଆରାଣୀଙ୍କ ବେକରୁ ହାରଟି କାଟି ଘେନଆସିଲା, ସାଧବହିଁଅକୁ ଦେଲା, ସାଧବହିଁଅ ହାରକୁ ରଖିଲା; ପରଦିନ ଗ୍ରାଉଡ଼ି ରଜାପୁଅ ପାଖକୁ ଗଲା; କହିଲା ମୋ ହାର ଦିଅ । ରଜାପୁଅ ଗଲା, ଭାରଯାକୁ ହାର ମାଗିଲା, ରାଣୀ ବେକ ଦରଶ୍ରିଲାବେଳକୁ ହାର ନାହିଁ । ରାଣୀ କାନ୍ଦା ହୋଇ ବସିଲା, ରଜାପୁଅକୁ କହିଲା, ମୋ ହାରଟି କିଏ ନେଇଗଲାଣି । ରଜା ପୁଅ ବଡ଼ ହଇରାଣରେ ପଡ଼ିଲା, ଭୂନ ହୋଇ ଘରେ ଲୁଚ ରହିଲା । କେଲୁଣୀ ଡାକ ଥକଲା, ରଜାପୁଅ ଆଉ ଶୁଣୁ ନଥାଏ । କେଲୁଣୀ ଭଲଲୋକମାନଙ୍କୁ ଡାକଆଣିଲା, ଭଲଲୋକେ ସବୁ ରଜାପୁଅକୁ ଘରୁ ଡାକ ଅଣିଲେ । ସାଧବହିଁଅ କହିଲା ମୋ ହାର ଦିଅନ୍ତୁ, ନଇଲେ ମୋ ସାଙ୍ଗରେ ଚାଲନ୍ତୁ । ରଜାପୁଅ ହାରର ଦାମ୍ ଯାଚଲା, କେଲୁଣୀ କେବେ ମାନଲା ନାହିଁ, ଏକଜିଦ୍ ଲଗାଇଥାଏ ହାର ନ ଦେଲେ ମୋ ସାଙ୍ଗରେ ଚାଲ । ଭଲ ଲୋକ କହିଲେ, କହିଚନ୍ତି ଯେତେବେଳେ ଯିବେ ନାହିଁ କଣ । ସାଧବହିଁଅ ରଜାପୁଅକୁ ସାଙ୍ଗରେ ନେଇ ଚାଲି ଗଲା, ତା ଘରେ ରଖାଇଲା । କେଲୁଣୀ ବେଶ ଛାଡ଼ି ଭଲ[redacted]ା ପିନ୍ଧିଲା । ପୂଜାହାସକ କହିଲା ଆଜ ଭଲ କର ରନ୍ଧାବଡା [redacted] ପୂଜାହାସ ବେଶେଷଇବାସ କଲା । ସାଧବହିଁଅ ଯୋଉଢରେ ବସଉଠ କରେ ସେହିଘରେ ଯେଗାହେଲା । ରଜାପୁଅକୁ ଡାକ ଅଣିଲେ ଖାଇବାକୁ । ଭାତ ତରକାରି ସବୁ ସୁନାବାସନ ରୁପାବାସନରେ ବଢା

ହୋଇଥାଏ । ରଜାପୁଅ ଖାଇବସି ଦରଖୁଆ ହେଲାଣି ସାଧବଝିଅ କହିଲା,'କଡ଼ାଙ୍କେ ମର କଡ଼ାକେ ଭର କଡ଼ାକେ ଘର ଦୁଆର କର; କଡ଼ାଏ କହୁଡ଼ି ବେଉନ୍ତ୍ର ପାଇଲେ ନୃପତିକୁମରେ ବନ୍ଦୀ ବି କର ।" ରଜାପୁଅ ସବୁ ବୁଝି ପାରିଲା, ଖାଇଲାଠାଉଁ ଉଠି ଯାଇ ସାଧବଝିଅ ହାତକୁ ଧରିପକାଇଲା, କହିଲା ତମେ ସେହି । ମୋ ଦୋଷ କ୍ଷମା କର । ଏହାକହି ସାଧବଝିଅକୁ ଘରକୁ ନେଇଗଲା, ତାକୁ ପାଟରାଣୀ କଲା, ଦ ଭାରିଯାକୁ ଘେନି ସୁଖରେ ରହିଲା; ମୁଁ ଗଲାକୁ କଥା ନ କହିଲା । ମୋ କଥ ଟି ସରିଲା, ଫୁଲଗଛଟି ମରିଲା ।

ହଇରେ ଫୁଲଗଛ କାହିଁକି ମରିଲୁ ? ମତେ ଗାଈ ଖାଇଗଲା ।
ହଇରେ ଗାଈ କାହିଁକି ଖାଇଲୁ ? ମତେ ଡେଉଡ଼ା ଜଗିଲା ନାହିଁ ।
ହଇରେ ଡେଉଡ଼ା କାହିଁକି ଜଗିଲୁ ନାହିଁ ? ମତେ ବଡ଼ବୋହୂ ଭାତ ଦେଲାନାହିଁ ।
ହଇଲେ ବଡବୋହୂ କାହିଁକି ଭାତ ଦେଲୁ ନାହିଁ ? ମତେ ପୁଅ ଗୁଡିଲା ନାହିଁ ।
ହଇରେ ପୁଅ କାହିଁକି ଗୁଡ଼ିଲୁ ନାହିଁ ? ମତେ ଧୂଳିଅଜଗା କାମୁଡ଼ିଲା ।
ହଇରେ ଧୂଳିଅଜଗା କାହିଁକି କାମୁଡ଼ିଲୁ ? ମୁଁ ତଳେ ୬ ଥାଏଁ କଅଁଳ ମାଉଁସ ପାଇଲେ ଚୁଟ୍ କରି ଖାଏଁ ।

ସମ୍ପୂର୍ଣ୍ଣ ।

କଟକ ଦତ୍ତପ୍ରେସରେ ଶ୍ରୀହରମୋହନ ଦତ୍ତଙ୍କ ଦ୍ୱାରା
ମେସିନ୍ଯନ୍ତ୍ରେ ମୁଦ୍ରିତ ।